ପ୍ରକାଶକ— ଶ୍ରୀ ମହେଶ୍ବର ମହାକୁଲ ବି. ଏ.
ବୌଦ, ଓଡ଼ିଶା

ପ୍ରଥମ ସଂସ୍କରଣ—ଏକହଜାର
ମୂଲ୍ୟ-- ଏକ ଟଙ୍କା
୧୯୫୦

ମୁଦ୍ରାକର—
ଶ୍ରୀ ଲକ୍ଷ୍ମୀଧର ନାୟକ
ସିଟି ପ୍ରେସ୍
ଯାମସେଦପୁର

ପ୍ରଚ୍ଛଦପଟ୍ଟ ଓ ବ୍ଲକ—
ଓଡ଼ିଶା ପ୍ରେସ ଏଣ୍ଡ ପବ୍ଲିସିଟି ସର୍ଭିସ୍,

# ଉତ୍ସର୍ଗପତ୍ର

ଯେଉଁ କୈଶୋରବନ୍ଧୁ ଯଜ୍ଞେଶ୍ୱର ମିଶ୍ରଙ୍କ
ଉତ୍ସାହ, ଉଦ୍ଦୀପନା ଓ ପ୍ରେରଣା
ବଳରେ ଏହି ଉପନ୍ୟାସ ଖଣ୍ଡିକ
ଲେଖିବାରେ ମୁଁ ସମର୍ଥ ହୋଇ ପାରିଛି
ତାଙ୍କର କରକମଳରେ ଏହା
ଅର୍ପଣ କଲି ।

ଲେଖକ

# ନିଜ କଥା

ଲେଖକ ହେବାର କଳ୍ପନାଟା ଥିଲା ମୋର ବହୁଦିନରୁ । କେତେ-ଥର ଛାତ୍ର ଜୀବନରେ କିଛି ନା କିଛି ଗୋଟାଏ ଲେଖା ଆରମ୍ଭ କରିବି । ମାତ୍ର ଏ କର୍ମମୟ ତରୁଣ ଜୀବନରେ ଅବସର କେତେବେଳେ ମିଳେନା । ଦିନ ଗୁଡ଼ାକ କଟିଯାଏ ସାଙ୍ଗ ସାଥିଙ୍କ ଖୁସି ମେଳରେ, ମଜାଗପରେ । ଅନାବଶ୍ୟକ ସ୍ଫୁର୍ତ୍ତି କରିବାକୁ ଯଥେଷ୍ଟ ସମୟ ମିଳେ । ମାତ୍ର କଲମ ଧରି ଲେଖି ବସିଲେ ସମୟ ଖୁବ୍ ଟେଃଡ଼ଫୁଲ୍ ଜଣାପଡେ । ଲେଖି ବସିବାକୁ ପେସେନ୍ସ ରହେନା ।

ଏତେଦିନ ପରେ ହଠାତ୍ ଏହି ଉପନ୍ୟାସ ଖଣ୍ଡିକ କଲମ ମୁନରୁ ମୋର ଅକ୍ସିଡେଣ୍ଟାଲି ବାହାରି ପଡ଼ିଲା । ବାଲ୍ୟବନ୍ଧୁ ଶ୍ରୀମାନ୍ ପରମେଶ୍ୱର ମିଶ୍ରଙ୍କ ବାରମ୍ବାର ଉତ୍ସାହ ଓ ସାହାଯ୍ୟ ପାଇ ମୁଁ ଏ ପୁସ୍ତକଖଣ୍ଡ ଲେଖିପାରି ଥିବାରୁ ତାଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଜଣାଉଛି ।

ପ୍ରିୟ ପାଠକବୃନ୍ଦ । ଏପରି ଜଣେ ଅଜଣା ଅଶୁଣା ଲେଖକଙ୍କ ନାମ ଦେଖି ପ୍ରଥମେ ଚମକି ପଡ଼ିବେ ନାହିଁ । ଆପଣମାନଙ୍କ କର୍ମମୟ ନୀରସ ଜୀବନରେ ଏ ଖଣ୍ଡିକ ବେଶ୍ ଆଶା ଓ ଆନନ୍ଦ ସଂଚାର କରି ପାରିବ ଏହା ମୋର ଦୃଢ଼ବିଶ୍ୱାସ । ଇତି ।

ଲେଖକ

ଭିକ୍ଟୋରିଆ ଟର୍ମିନସ୍‌ରେ ଗାଡ଼ି ପହଞ୍ଚିଲା ବେଳକୁ ସାଢ଼େ ନଅଟା । ସତ୍ୟେଶ୍ୱର ଦୟାଲ ଫାଷ୍ଟକ୍ଲାସ କମ୍ପାର୍ଟମେଣ୍ଟରୁ ଓହ୍ଲାଇପଡ଼ି ଚାଲିଲେ ପ୍ଲାଟ୍‌ଫର୍ମକୁ । ସାଙ୍ଗରେ ଚାକର ଟୋକା ନରେନ୍ । ପାଖରେ ବେଶି କିଛି ଜିନିଷ ପତ୍ର ନ ଥିଲା । ଗୋଟିଏ ଚମଡ଼ା ସୁଟ୍‌କେଶ ଏବଂ ବେଡ଼ିଂଟା । ନରେନ୍ ନିଜେ ଏତିକି ଧରି ଚାଲିଲା ପ୍ଲାଟ୍‌ଫର୍ମ ଆଡ଼କୁ । ସତ୍ୟେଶ୍ୱରଙ୍କ ଅଫିସର ବେଶ୍ ଜଣେ ବନ୍ଧୁ ସମୟରୁ ଅପେକ୍ଷା କରି ରହିଁ ବସିଥିଲା । ହଠାତ୍ ସଲାମ ପକାଇ ଲୋକଟି କାନମୂ ହୋଇ ପାଖରେ ଛିଡ଼ା ହେଲା । ବାବୁ ପଚାରିଲେ, କରମ ଖାଁ । ସବୁ ଠିକ୍ ଅଛି ତ ? ଉତ୍ତର ଆସିଲା—ହଜୁର । ବାବୁ ବସିଲେ ଫ୍ରଣ୍ଟ ସିଟ୍‌ରେ । ଚାକର ଟୋକା ବେଡ଼ିଂପତ୍ର ଧରି ପଛ ପାଖରେ ବସିଲା । ମଟର ଷ୍ଟାର୍ଟ କରି ଛୁଟିଲା ପବନଠାରୁ ଅତି ଦ୍ରୁତ ଗତିରେ । କରମ୍ ଖାଁ ଖୁବ୍ ଏକସ୍‌ପର୍ଟ ଡ୍ରାଇଭର । ଅଧଘଣ୍ଟାକରେ ଗାଡ଼ି ପହଞ୍ଚିଲା ଦୟାଲ ବାବୁଙ୍କ କୋଠାରେ । ବାବୁ କୋଠା ଆଗରେ ପହଞ୍ଚିଛନ୍ତି କି ନାହିଁ ସଙ୍ଗେ ସଙ୍ଗେ ଦଶ ନା ବାର ସଲାମ । ବାବୁ ଭିତରକୁ ଚାଲିଲେ ।

କୋଠାଟି ଫିରୋଜ ଶାହ ମେହେଟା ରୋଡ଼ରେ । ଦୟାଲ୍ ବିଲ୍ଡ଼ିଂ କହିଲେ ବମ୍ବେ ସହରରେ ନ ଜାଣେ କିଏ ? ସମେଶ୍ୱର ଦୟାଲ୍ ବମ୍ବେର ଜଣେ କୋଟିପତି ଶେଠ । ଟଙ୍କା ଦୁନିଆରେ କଅଣ ନ କରନ୍ତି ? କିଏବା ଟଙ୍କାର ଅଧୀନ ନୁହେଁ । ସମେଶ୍ୱର ଅଜସ୍ର ଭଣ୍ଡାରର ମାଲିକ । ବମ୍ବେ ମାନ୍ଦ୍ରାଜ ରେଙ୍ଗୁନ କଥାତ ଛାଡ଼ ବିଦେଶରେ ମଧ୍ୟ ତାଙ୍କର ବାଣିଜ୍ୟ ସମ୍ବନ୍ଧ ରହିଛି । ବମ୍ବେର ଅନେକ ସିନେମାର ମାଲିକ ହେଉଛନ୍ତି ଶେଠ ସମେଶ୍ୱର ଦୟାଲ୍ । ଦୟାଲ ବିଲଡ଼ିଂ ବମ୍ବେ ସହରରେ ସର୍ବୋତ୍କୃଷ୍ଟ ସୁନ୍ଦର କୋଠା । ସମ୍ମୁଖରେ ଅଧୁନିକ ଧରଣର ଫୁଲର ମନୋହର ବଗିଚା ନାନା ପ୍ରକାର ଦେଶୀ ଫୁଲରେ ଭର୍ତ୍ତି । ପଛପଟେ ଏକ ଫଳ ବଗିଚା ସମୁଦାୟ ଘରଟି ବିଜୁଳି ଆଲୁଅରେ ଭରା । ଠାଏ ଠାଏ ଇଲେକଟ୍ରିକ୍ ପଙ୍ଖା ବୁଲୁଛି । ବୈଠକ ଖାନାଟି ଅତି ସୁନ୍ଦର ଭାବରେ ସଜ୍ଜିତ । ଜିନିଷ ଗୁଡ଼ିକ ସବୁ ବିଲାତ ଉତ୍ପନ୍ନ । ଦେଶୀ ଜିନିଷ ଭିତରେ ଟେବୁଲ କ୍ଲଥ୍ ଏବଂ ତା'ଉପରେ ଥିବା ପରଦାଟି ବିଦେଶୀ ଜିନିଷ ସହିତ ବେଶ କମ୍ପିଟିସନ୍ ଦେଇ ଲାଗି ଦେଉଛି ।

ନିଦ୍ରାର ସକାଳୁ ଉଠି ଦେଖେ ସେ ଏକ ସମ୍ପୂର୍ଣ୍ଣ ନୂତନ ଜାଗାରେ ପହଞ୍ଚି ଯାଇଛି । ତାକୁ ସମସ୍ତ ଜିନିଷ ନୂଆ ଲାଗିଲା । ରାତି ଅନ୍ଧାରରେ ବୋଧହୁଏ ସେ ସମସ୍ତ ଜିନିଷ ଭଲଭାବରେ ଦେଖିପାରି ନ ଥିଲା । ମନେ ମନେ ଭାବିଲା ଏକଅଣ ସତେ ସ୍ୱର୍ଗପୁରୀ । ନିଜ ଚକ୍ଷୁକୁ ବିଶ୍ୱାସ କରି ନ ପାରି ଭାବିଲା ଯେମିତି କୌଣସି ମ୍ୟାଜିକ ବଳରେ ସେ ସେଠାକୁ ଚାଲି ଆସିଥିଲା । ଭଲ ଭାବରେ ଆଖି ଦୁଇଟାକୁ ମଳି ଦେଇ ଫାଟକ ଅଡ଼କୁ ଯାଇ ବୁଲି ଆସିଲା । ଦେଖିଲା ତାର ଧାରଣା ସଂପୂର୍ଣ୍ଣ ଭୁଲ । ସେ ନିର୍ବୋଧ ପରି କଅଣ ଗୁଡ଼ାଏ ଭାବୁଛି । ସମେଶ୍ୱର ବାବୁଙ୍କ କୋଠା ସାମନାରେ ବଡ଼ ବଡ଼ ଅକ୍ଷରରେ ଲେଖା

ହୋଇଥିଲା—ସୋମେଶ୍ୱର ବ୍ରଜଲାଲ ଦାସ୍‌ଙ୍କ ବିଲ୍‌ଡିଂ ନମ୍ବର ୨

ନମ୍ବର ୨ ଦେଖି ନିହାରର ମନରେ ଭାରି କୌତୁହଳ ଜାଗିଲା । କୋଠାରେ ନମ୍ବର ଥିବାର କାରଣ ସେ ବୁଝିପାରିଲା ନାହିଁ ସୋମେଶ୍ୱର ବାବୁଙ୍କ ଅଧୀନରେ ଏହୁ କୋଠା ଗଣ୍ଡିଏ ନୁହେ ଏହିପରି ଅନେକ କେତେ ଗଣ୍ଡା କୋଠା ବମ୍ବେ ସହରରେ ଅଛି । ପ୍ରତିଦିନ ଶହ ଶହ ଲୋକ କିଏ ମୋଟର ରେ, କିଏ ରିକ୍‌ସାରେ କିଏ ଅବା ଘୋଡ଼ା ଗାଡ଼ିରେ ଆସି ଆସି ପହଞ୍ଚି ଯାନ୍ତି ଶେଠଜୀଙ୍କ ପାଖରେ । ଉଦ୍ଦେଶ୍ୟ ତାଙ୍କ ସାଙ୍ଗରେ ସଉଦା କାରବାର ନେଇ କଥାବାର୍ତ୍ତା କରିବା । ଘର ଭଡ଼ାରୁ ଦାସ୍‌ଲଦାସ ପ୍ରତି ମାସ ଅଦାୟ ପାଆନ୍ତି ଦଶହଜାର ଟଙ୍କା ।

ନିହାର ପାଇଁ ସ୍ୱତନ୍ତ୍ର ଗୋଟିଏ କୋଠରୀ ସଜ୍ଜିତ ହୋଇ ରହିଛି । ସବୁବେଳେ ପାଖରେ ଚାକର ଟୋକା ଜବାନା । ଅପେକ୍ଷାରେ ହିଁ ଭଲ ରହନ୍ତି । ନିହାର ପ୍ରତିଦିନ ସକାଳୁ ଉଠି ମିନତୀ ଦେବୀଙ୍କ ପାଦତଳେ ମୁଣ୍ଡଟି ଲଗାଇଦିଏ । ସେହିଥିରେ ସେ ପାଏ ଉଜ୍ଜ୍ୱଳ ମାତୃଭକ୍ତିର ଗଭୀର ପରାକାଷ୍ଠା ଏବଂ ବଦଳରେ ମିନତୀ ଦେବୀ ପାଆନ୍ତି ଅକୃତ୍ରିମ ବାତ୍ସଲ୍ୟ ପ୍ରେମ । ବିପୁଳ ସମ୍ପତ୍ତିର ମାଲିକ ଏବଂ ଅସଂଖ୍ୟ ଚାକର ବାକରଙ୍କ ସେବାର ଅଧିକାରୀ ହୋଇଥିଲେ ମଧ୍ୟ ସବୁବେଳେ ଶେଠ ଦମ୍ପତିଙ୍କ ମନରେ ବିଷାଦ ଭାବ ଦେଖା ଯାଏ । ସାନଝିଅ ଅଣାଲତା ଲେପଟେଇବେଲେ ଆସି ସୋମେଶ୍ୱର ଦମ୍ପତିଙ୍କ ନାଲିପଗଡ଼ିକୁ ଟାଣିବା ଉଦ୍ଦେଶ୍ୟରେ ପିଠି ଉପରକୁ ଚଢ଼ିଯାଏ ସେତେବେଳେ ସେମାନେ ଗଭୀର ଆନନ୍ଦ ଉପଭୋଗ କରନ୍ତି । ମାତ୍ର ଅନେକ ସମୟରେ ସେମାନଙ୍କ ମନରେ ଗୋଟିଏ ବିଷୟ ନେଇ ଅବସାଦ ଆସିଯାଏ । ଅନ୍ତରରେ ଏକ ପ୍ରଶ୍ନ ସେମାନଙ୍କୁ ବ୍ୟଥିତ କରି ପକାଏ । ସେମାନେ ଭାବନ୍ତି ଏହି ବିପୁଳ ସମ୍ପତ୍ତିର ଅଧିକାରୀ କିଏ ?

ସେମାନେ ଯେ ଅଳ୍ପଦିନ ପରେ ବିଦାୟ ନେଇ ଚାଲିବେ । ସେତେବେ ଏ ସମସ୍ତଙ୍କ ଅନ୍ତର୍ଧାରା ଚଞ୍ଚଳତା ନା ଅଶାନ୍ତତା । ଘର ମୁହଁ ଭିତରେ ପୁଣି ମନେ ପଡ଼ିଯାଏ । ସେମାନେ ପୁଣି ନୂହନ୍ତି— ଭଳିଆ । ଏହି ଅନ୍ତର ବେଦନା ଟିକିଏ ଜଳୀୟ ବାଷ୍ପର ଉଠିଯାଏ ସେମାନଙ୍କ ହୃଦୟ ଆକାଶକୁ ଅବସ୍ଥାନରେ ଶୋକ ବୃଷ୍ଟି ଉଦ୍ଦେଶ୍ୟରେ । ନିହାର ରଞ୍ଜନକୁ ଗାଇଲାଦିନ ଠାରୁ ମିନତି ଦେବୀ ଦେଖି ଅଶ୍ୱସ୍ତି ଅନୁଭବ କରୁଛନ୍ତି । ନିହାରର ମଧ୍ୟ ସମସ୍ତଙ୍କ ପ୍ରତି ଏକ ମମତା ଜନ୍ମି ଯାଇଛି । ଦୟାଲଙ୍କୁ ସେ ବାବା ଏବଂ ମିନତୀ ଦେବୀଙ୍କୁ ମାମି ବୋଲି ଡାକେ । ପୁଷ୍ପ ଏବଂ ଅଞ୍ଜା ତାର ଆଦରର ଗ୍ରେଟ ଭଉଣୀ । ଆସିବା ଦିନୁ ପ୍ରତିଦିନ ସକାଳେ ଏବଂ ସନ୍ଧ୍ୟାରେ ପୁଷ୍ପ ନିହାର ପାଖରେ ଘଣ୍ଟାଏ ଲେଖାଏଁ ଇଂରେଜୀ ପଢେ । ସେଥିରେ ନିହାର ପାଏ ଆନନ୍ଦ ଓ ଆଶ୍ୱାସନା । ସେ ଯେ ଦୟାଲଙ୍କ ଘରେ ରହିଛି । ତାଙ୍କ ପ୍ରତି କୃତଜ୍ଞ ଓ ଅନୁରକ୍ତ ରହିବା ତାହାର ନିତାନ୍ତ କର୍ତ୍ତବ୍ୟ । ନିଜର କର୍ତ୍ତବ୍ୟ ସମ୍ପାଦନ କରେ ବୋଲି ସେ ପାଏ ଆଶ୍ୱାସନା ।

ନିହାରର ପ୍ରତି ଦିନ କାର୍ଯ୍ୟ ହେଉଛି ଘରର କାମଦାମ ବୁଝିବା, ଚାକର ବାକରଙ୍କ ପଇସା ଦେବା ଏବଂ ଅନ୍ୟାନ୍ୟ ମାମୁଲି ହିସାବ ପତ୍ର ରଖିବା । ଏ ସବୁକୁ ସେ ବେଶି Import ance ଦିଏନା । ସାଇକେଲ ଖଣ୍ଡିକ ନେଇ ଚାରଣୀ ବେଳେ ବୁଲି ବାହାରେ ତ ଓପରେ ଯାଇ ସହ ଠିକ୍ ଆଠଟା ହେଲେ । କୌଣସି ଦିନ ସ୍କୁଲରେ ହେଲେ ବେଶିଲ ବାହାର ଆସିବାଟା ହୁଏ ନାହିଁ ସିନେମା ଦେଖିବା, ପାର୍କରେ ବୁଲିବା, ଓଡ଼ିଆ ବନ୍ଧୁ ବନ୍ଧୁଙ୍କ ପାଖକୁ ଯାଇ ଘଣ୍ଟା ଘଣ୍ଟା ଧରି ଖୁସିଗପ କରିବା ତାର ରୁଟିନରେ ଇନ୍ ଅନ୍ତରଙ୍ଗ ମେମ୍ବରଙ୍କ କାମ ।

ଦୟାଲ ବାବୁ ଏଥିପାଇଁ ତାଙ୍କୁ କିଛି କହନ୍ତି ନାହିଁ । ଏ ଗୁଡ଼ାକ ଆଧୁନିକ ଜୀବନର ଗୋଟାଏ ଗୋଟାଏ ଉପାଦେୟ ବସ୍ତୁ ବୋଲି ସେ ଭାବନ୍ତି । ସେ ଗୃହାନ୍ତି କେମ୍ୱପରି ସହରରେ ରହି ନିହାର ପରିଚ୍ଚ୍ଛ ହେବା ଦରକାର । ସେସବୁ ନହେଲେ ଆଧୁନିକ ଜଗତରେ ଚଳିବା ବଡ଼ ମୁସ୍କିଲ । ଏ ସମସ୍ତ ପୂର୍ତ୍ତି କରିବା ସତ୍ତ୍ୱେ ନିହାର ନିଜ କର୍ତ୍ତବ୍ୟକୁ ଭୁଲି ଯାଏ ନାହିଁ । ଯେଉଁ ପାଠ ଆସିଲେ ମଧ୍ୟ ତାର ମନେ ପଡ଼ିଯାଏ ତାର ଦୈନନ୍ଦିନ ଜୀବନର ଏକ କର୍ତ୍ତବ୍ୟ— ସେ ଯେ ପୁଷ୍ପ ଲତାର ଟ୍ୟୁଟର । ଅଛ ତରତର ହୋଇ ଡାକି ପକାନ୍ତି ପୁଷ୍ପ ପୁଷ୍ପ ବୋଲି । ମନେ ହୁଏ ଯେପରି କି ତାଙ୍କୁ କିଛି ଜରୁରୀ ଆଦେଶ ଦିଆଯିବ । ଶିକ୍ଷକଙ୍କ ଡାକରେ ପଡ଼ିଲେ ସାଧାରଣତଃ ଛାତ୍ର ଟିକିଏ ଶଙ୍କିଯାଏ । ବାଧ୍ୟ ହୋଇ ମୁଣ୍ଡ ନୁଆଇ ଶିକ୍ଷକଙ୍କ ପାଖକୁ ଧାଇଁ ଯାଏ—ଟିକିଏ ଶଙ୍କିତ ଗଳାରେ ଅଣ୍ଣ କହି ।

ମାତ୍ର ପୁଷ୍ପଲତାର ଏ ଭୟ ନାହିଁ । ବଡ଼ ଅପାଙ୍କ ପାଟିରୁ ଡାକ ଶେଷ ନ ହେଉଣୁ ସେ ବହିଖାତା ଧରି ଦୌଡ଼ିଯାଏ ନିହାର ବାବୁଙ୍କ ପାଖକୁ । ବହିଖାତା ନେବାକୁ କେବେ ହେଲେ ଭୁଲେ ନାହିଁ । କାରଣ ଅପାଙ୍କର ସେପରି ବରାଦ । ତା ପରେ ପାଠପଢ଼ା ଆରମ୍ଭହୁଏ ।

ପୁଷ୍ପଲତା ଦୟାଲ ବାବୁଙ୍କର ବଡ଼ଝିଅ । ବୟସ ଆଠବର୍ଷ ହେବ । ହାଇସ୍କୁଲ ପଞ୍ଚମ ଶ୍ରେଣୀରେ ପଢ଼େ । କରିମ୍ ଖାଁର ପ୍ରତି ଦିନର କାମ ହେଉଛି ପୁଷ୍ପଲତାକୁ ସାଢ଼େ ଦଶଟାରେ ନେଇ ସ୍କୁଲରେ ଛାଡ଼ିଦେଇ ଆସିବା । ପୁଣି ପାଞ୍ଚ ଘଣ୍ଟାରେ ତାକୁ ଆଣିବା ପାଇଁ । ନିହାର ଅଫିସା ଦିନ ଠାରୁ ପ୍ରାଇଭେଟ ଟ୍ୟୁଟର ଅବଶ୍ୟକ ନାହିଁ । ତେଣେ ଏହି କାମ ତୁଲାଇ ନେଉଥାନ୍ତି । ତାଙ୍କ ହାତ ଭଲ ଅକ୍ଷରରେ କଣ । ହାତି ଲେଖିପାରନ୍ତି ଜାଣନ୍ତି । ପୁଷ୍ପଲତା ନିହାର

ପାଠରେ ହିନ୍ଦୀ ଓ ଇଂରେଜୀ ପଢ଼େ । ନିଜ ଘରର ପିଲା ମନେ କରି ଦୟାଲ ବାବୁ ତାଙ୍କ ଜିମାରେ ପୁଷ୍ପକୁ ଛାଡ଼ି ଦେଲେ ।

ଛ ମାସ ପରର କଥା ଅଛି ନାହାର ବାବୁଙ୍କ ମୁହଁରେ ଏକ ନୂତନ ଆନନ୍ଦର ଜୁଆର ଖେଳି ଯାଉଛି । ପୁଷ୍ପଲତା ସ୍କୁଲରୁ ଫେରନ୍ତି ଅତି ଖୁସି ଖୁସି ମନରେ । ଅନ୍ୟ ଦିନ ପରି ଖାଲି ହାତରେ ସେ ଫେରିନାହାନ୍ତି । ହାତରେ ଅଛି ବସ୍ତାନିଟା ଓ ଅଧିକ ଗୋଟାଏ ନୂଆ ଜିନିଷ । ସ୍ୱର୍ଗରୁ କୋହିନିଧି ପାଇଲା ପରି ପୁଷ୍ପ ସ୍କୁଲର ମାଷ୍ଟରଙ୍କ ପାଖରୁ ମିନତୀ ଦେବୀ ସେ ସବୁ ଦେଖି ଅବାକ୍ ହୋଇ ପଡ଼ିଲେ ।

ସଙ୍ଗେ ସଙ୍ଗେ ପଚାରିଲେ ଏ ଗୁଡ଼ାକ ଆଣିଲୁ କେଉଁଠୁ ? ଏତେ ଜିନିଷ । ଗୋଟାଏ କଲର୍ ବାକ୍ସ; ତୁଳି, ଖାତା ରବର ପେନସିଲ୍—ଏତେ ଗୁଡ଼ାଏ...... ପୁଷ୍ପ ହସି ହସି କହିଲା ମାମି ଏସବୁ ପ୍ରାଇଜ । ଗଭର୍ଣ୍ଣର୍ ସାହେବ ଆଜି ପ୍ରାଇଜ ଡିଷ୍ଟ୍ରିବ୍ୟୁସନ୍ ଏ ଗୁଡ଼ାକ ଦେଇଛନ୍ତି ।

ମିନତୀ ଦେବୀ କିଛି ବୁଝି ନ ପାରି ପଚାରିଲେ କଅଣ ? ପ୍ରାଇଜ କଅଣ ?

ପୁଷ୍ପର କଥାବାର୍ତ୍ତା ଶୁଣି ନାହାର ନ ହସି ରହି ପାରିଲେ ନାହିଁ । କଥାଟା ତରତର ହୋଇ ରଖିଦେଇ ଲ୍ୟାମ୍ପ ସାମନାକୁ ଗୁଞ୍ଜି ଆସିଲେ । ତା ଠାରୁ ସମସ୍ତ ଘଟଣାଟା ମିନତୀ ଦେବୀ ବୁଝି ପାରିଲେ । ସେ ଦିନ ତାଙ୍କ ସ୍କୁଲରେ ପୁରସ୍କାର ବିତରଣୀ ସଭା ହୋଇଥିଲା । କଟକ ମହାମାନ୍ୟ ଲାଟ ସାହେବ ଓ ତାଙ୍କର ସହଧର୍ମିଣୀ ନିମନ୍ତ୍ରିତ ହୋଇ ଆସିଥିଲେ । ବିଭିନ୍ନ ଖେଳ ଯୋଗିତାରେ ଯୋଗଦାନ କରିଥିବା ପିଲାମାନଙ୍କୁ ପୁରସ୍କାର ମିଳିଲା । ପୁଷ୍ପଲତା ଏପୁରସ୍କାର ପାଇଛି ଡ୍ରଇଂ ପ୍ରତିଯୋଗିତାରେ । ବାଳିକା ପିଲାଙ୍କ ଭିତରେ ସେ ହୋଇଛି ପ୍ରଥମ ଡ୍ରଇଂରେ ପୁଷ୍ପର ଏପରି କୃତିତ୍ୱ ଅଚିହ୍ନା କେଉଁ ଦିନୁ ଥିବ ମିନତୀ

ଦେବୀ ଅସ୍ଥିର ହେଲେ । ଶେଠଜୀଙ୍କ କାନରେ ମଧ୍ୟ ଏ କଥା ପଡ଼ିଲା
ତାଙ୍କର ଗୁଡ଼ ଲୁଚେଇ ମୋଟ । ମନେ ମନେ ସେ ଠିକ କରି ନେଲେ
ତାହା କେବଳ ନାହାରର ସରଞ୍ଜାମ ଓ ଚେଷ୍ଟାର ଫଳ । ସେହି ଦିନଠାରୁ
ନାହାର ପ୍ରତି ଦୟାଳ ବାବୁଙ୍କର ସ୍ନେହ ଓ ବିଶ୍ୱାସ ବୃଦ୍ଧି ହୋଇଲା
ସେ ଭାବିଲେ ନାହାର ବାସ୍ତବିକ କର୍ତ୍ତବ୍ୟ ପରାୟଣ । ଦୟାଳଙ୍କର
ଏ ଧାରଣା ସଂପୂର୍ଣ୍ଣ ଠିକ । ନାହାର କେଉଁ ଗୁଣରେ କମ୍ ନୁହେଁ ।
ଛବି ଆଙ୍କେ, ଗୀତ ଗାଏ, ହାରମୋନିଅମ ବଜାଏ ଏବଂ ନାଚେ ମଧ୍ୟ
ଏହାଛଡ଼ା ସଭା ସମିତିରେ ଲମ୍ବା ଲମ୍ବା ବକ୍ତୃତା ମଧ୍ୟ ଦେଇ
ପାରେ ।

ମାତ୍ର ଏ ସମସ୍ତ ଶେଠଜୀଙ୍କୁ ଜଣା ନାହିଁ । ତୁଳସୀ ଦୁଇପଦକୁ
ବାହିଲା ପରେ ନାହାର ଗୁଣ ଶେଠଜୀଙ୍କ ପରିବାରରେ ବଢ଼ି ଉଠିଲା ।
ଦିନୁଦିନ ଦୟାଳଦମ୍ପତି ନାହାରକୁ ଅତି ଆଦରର କରିନେଲେ । ତା
ଠାରେ ହିଁ ସେମାନେ ଉପଲବ୍ଧି କଲେ ପାଇଲେ ପ୍ରକୃତ ବାତ୍ସଲ୍ୟ
ପ୍ରେମ । ଅଶାଲତା ଓ ନାହାରଙ୍କ ଜନ ଦୁଇଜଣଙ୍କ ଭିତରେ ସେମାନେ
କିଛି ପ୍ରଭେଦ ଦେଖୁ ନ ଥିଲେ । ମିନତୀ ଦେବୀ ନାହାରକୁ
ଅଶାଲତାଠାରୁ ମଧ୍ୟ ଅଧିକ ଭଲ ପାଇଲେ । ଏହାର କାରଣ ନାହାର
କେବେ ହେଲେ ମା ମିନ୍ଙ୍କ କଥାକୁ ଅମାନ୍ୟ କରେ ନାହିଁ ।

ଦିନେ ରାତି ନଅଟା ପର୍ଯ୍ୟନ୍ତ ନାହାର ଅଫିସରୁ ଫେରିଲା
ନାହିଁ । ସାଇକେଲ ମିସ୍ତ୍ରି ଘର ଗୁରୁବା ଦେଲୁ କୁଆଡ଼େ ଯାଇଛି ?
ନାହାରର ବିଳମ୍ବ ଦେଖି ମିନତୀ ଦେବୀଙ୍କ ମନଟା । ଗୋଳ ମାଳି
ହେଲା । କୁଆଡ଼େ ଗଲା । ପୁଣି ବମ୍ବେ ପରି ସହରରେ । ଏମିତି କେତେ
କଥା ଭାବିଲେ । ଶେଠଜୀ ବି ଚିନ୍ତାରୁ ମୁକ୍ତ ନଥିଲେ । ମିନତୀଦେବୀ
ଘର ବେସ୍ତ ନାହାର ପାଇଁ । କଅଣ କରିବେ ? କେଉଁଠାରେ ତା
ଖବର ପାଇବା ମିଳିବ ?

ଡ୍ରାଇଭରକୁ ସେ ଆଦେଶ ଦେଲେ ମୋଟର ଧରି ଯିବାକୁ । ଅକ୍ସନ୍ ଗଁ । ଅଫିସ କାର ଶେଷ କରି ଧରି ଗୁଲିସ୍ତାନ ନାଇଟ୍ର ଉଦ୍ଦେଶ୍ୟରେ କୌଣସି ଠାରେ ତାର ଯିବା ନାହିଁ । ଶୁଣିଲେ ଜାଟସ୍କା କ୍ଲବରେ ସଙ୍ଗୀତ ପ୍ରତିଯୋଗିତା ହେଉଛି । ଛୁଟାଇଲେ ମୋଟର ଦେଶୀ ଷ୍ଟ୍ରିଟରେ । ପଥଚଣ୍ଡାଳ ଭିତରେ ମୋଟର ଯାଇ ପହଞ୍ଚିଲା ପିଅନ୍‌କୁ ମୋଟର ପାଖରେ ରଖିଦେଇ ଅକ୍ସନ୍ ଗଁ ଗୁଲିଲା ଉପରକୁ । ଭିତରେ ପଶି ପଡ଼ୁ ହଠାତ୍ ତାର ଆଖି ଜଣେ ଯୁବତୀଙ୍କ ଉପରେ ପଡ଼ିଲା । ବୟସ ଅଠର ବାଇଶ ହେବ । ହାରମୋନିୟମ ଗୋଟିଏ ଆଗକୁ ଟାଣି ଷ୍ଟେଜରେ ବସିଅଛନ୍ତି । ଆଗରେ ଟେବୁଲ୍ ଉପରେ ଥୁଆ ହୋଇଛି ଅଧିକାଂଶ ଧରଣର ଛୋଟଛୋଟି ବାଦ୍ୟଯନ୍ତ୍ର । ଯୁବତୀଟି କିଏ ହଠାତ୍ ସେ ଚିହ୍ନି ପାରିଲା ନାହିଁ, ମାତ୍ର ଯୁବକ ଜଣକ ଚଞ୍ଚଳ ଉଠି ପଡ଼ି ଡ୍ରାଇଭର ଅଡ଼କୁ ଧାଇଁ ଆସିଲେ ।

ଡ୍ରାଇଭର କହି ଉଠିଲା, ଓହୋ ! ଜହାରବାବୁ ! ଚଞ୍ଚଳ ଗୁଲନ୍ତୁ । ମାମି ଖୁବ ବ୍ୟସ୍ତ ।

ଗୁଡ଼ ନାଇଟ୍ କହି ଜହାର ଗୁଲିଲା ରୁମ ଭିତରୁ । ତର ତର ହୋଇ ଆସିଲା ବେଳେ ହଠାତ୍ ହାତରୁ ତାର ଖସି ପଡ଼ିଲା କଅଣ ଗୋଟାଏ ଜିନିଷ । ଅନ୍ଧାର ଯୋଗୁଁ କିଛି ଦିଶୁ ନଥାଏ ।

ସାଙ୍ଗେ ସାଙ୍ଗେ ପିଅନ କହିଲା—ବାବୁ କଣ ଟା ପଡ଼ିଲା ଯେ ଅକ୍ସନ୍ ଗଁ । ଟର୍ଚ୍ଚ ମାରି ଦେଖିଲେ ଗୋଟାଏ ପ୍ଲାଟ୍ । ସେତେବେଳେ ଟର୍ଚ୍ଚର ଅସ୍ପଷ୍ଟ ଆଲୋକରେ ଜହାର ହାତରେ ଦିଶିଲା ଏକ ସ୍ୱର୍ଣ୍ଣପଦକ ଏବଂ ଗୋଟାଏ ସିଗାରେଟ୍ କେଶ ରୁପାରେ ତିଆରି । ସେ ଗୁଞ୍ଜରର ଦାମ ସମ୍ବନ୍ଧରେ ପ୍ରଶ୍ନ ଉଠିବା ସଙ୍ଗେ ସଙ୍ଗେ ଜହାର କହିଲା—

"ଏ ଗୁଞ୍ଜାର ପ୍ରାଇଜ୍ । ଆଜି ସଙ୍ଗୀତ ପ୍ରତିଯୋଗିତାରେ ମୁଁ ହୋଇଛୁ ଫାଷ୍ଟ !

ଯୁ। ଭିତରେ ନିହାର ପ୍ରେଣ୍ଡ୍ସ ମଜଲିସ୍‌ରେ Musical & Art Section ର ସେକ୍ରେଟେରୀ ହୋଇ ପଡ଼ିଥିଲା । ତେଣୁ ଅନେକ ସମୟରେ ତାହାଙ୍କ ଘରକୁ ଫେରିବାକୁ ରାତି ଅଠଟା ପର୍ଯ୍ୟନ୍ତ ସେଠାରେ ଲାଗେ ।

ସୁରେଶ୍ଵର ବାବୁ ଓ ତାଙ୍କ ସ୍ତ୍ରୀ ଏ ପର୍ଯ୍ୟନ୍ତ ଖାଇ ନାହାନ୍ତି । ସମୟ ଅଠ ଘଣ୍ଟା ଉପରେ । ବୈଠକ ଖାନାରେ ସେଠାରେ ବସିଅଛନ୍ତି । ହାତରେ ଗଣ୍ଡିଏ ଇଂରାଜୀ ମାଗାଜିନ୍ ।

ହଠାତ୍ ପଛରୁ ନିହାର ଆସିବାର ଦେଖି ଚମକି ପଡ଼ିଲେ । ନିହାର ହାତରେ ବଂଶୀଟି ଦେଖି ତାର ଅପୂର୍ବ ସୌଭାଗ୍ୟ ପାଇଁ ସେ ଉତ୍ଫୁଲ୍ଲ ହୋଇ ଉଠିଲେ । ପରମୁହୂର୍ତ୍ତରେ ନିହାରକୁ ପ୍ରଶଂସା ନ କରି ସେ ରହି ପାରିଲେ ନାହିଁ । ଏ ଯେ ସଂଗୀତ କଳା ପ୍ରତି ଆଦର— ମନେ ମନେ ସେ ଭାବିଲେ । ଜୀବନରେ ସଂଗୀତ ବିଦ୍ୟା ଏକ ଉପାଦେୟ କଳା । ସୁରେଶ୍ଵର ବାବୁ ଅଳ୍ପ ସମୟ ଭିତରେ ନିହାରର ବିଳମ୍ବ ହେବାର କାରଣ ବୁଝି ପାରିଲେ । ନିହାର ସାଙ୍ଗରେ ଆଣିଥିବା ସୁନ୍ଦର ପ୍ରେମ୍ ବନ୍ଧା ସର୍ଟିଫିକେଟ ଖଣ୍ଡିକ ପଢି ସୁରେଶ୍ଵର ବାବୁ ତାକୁ ବହୁତ ପ୍ରଶଂସା କଲେ ।

ନିହାରରଞ୍ଜନ ଦାସ—ପ୍ରଥମ ପୁରସ୍କାର—ସଂଗୀତ ପ୍ରତିଯୋଗିତା, ଏତକ ପଢ଼ି ମନେମନେ ସେଠାରେ ଖୁସିହୋଇ ହେଲେ ।

ଭୋଜନ ପରେ ଟେବୁଲ୍ କ୍ଲକ୍‌କୁ ଚାହିଁ ଦେଖିଲେ ସମୟ ବାରଟା । ନିହାରର ମନରେ ଭାରି ଦୁଃଖ ଆସିଲା । ତା ପାଇଁ ବୃଦ୍ଧ ସାମ ଦୟାଲ ବାବୁ ଓ ମିନତୀ ଦେବୀ ଏ ଏ ପର୍ଯ୍ୟନ୍ତ ଉପବାସ । କିନ୍ତୁ ଏଇଥି ପାଇଁ ସେ ସେମାନଙ୍କ ଠାରୁ ତିରସ୍କାର ପାଇନି । ମିନତୀ ଦେବୀ ତାଙ୍କ ମାତୃ ସୁଲଭ ଗୁଣରେ ତାକୁ ଦେଇଛନ୍ତି କ୍ଷମା । ଏହାପରେ ଆସିଲା ନିହାର ମନରେ ବସନ୍ତ ପର ବର୍ତ୍ତନ । ବୁଲିଚିବା

ସମୟଟା  ବଦଳି ଗଲା । ଛଅଟାରୁ ସାତଟା ପର୍ଯ୍ୟନ୍ତ ଅଧଘଣ୍ଟା
ଭଉଣୀ ଦୁଇଙ୍କୁ ସେ ଗୀତ ବାଦ୍ୟ ଶିଖାଇବାକୁ ଚେଷ୍ଟା କଲା । ଅ
ଲତାର ଅସ୍ପଷ୍ଟ ଦାର ଫୁଟା ଗଲା। ଦୟାଲ ଦମ୍ପତ୍ତିଙ୍କ କାନରେ ଅମୃତ
ଢାଳିଦିଏ । ନିହାର ସେଥିରେ ପାଏ ଗର୍ବ ଓ ବାହାଦୁରୀ ।

ଏହିପରି ନୂତନ ଏକ ବନ୍ଧୁ ମେଳରେ ଦୟାଲ ବାବୁଙ୍କ ପ
ବାଉଟି ଅଗେଇ ଚାଲିଲା ।ନିହାରର ନୂତନ ଉତ୍ସାହ ଓ ପ୍ରେରଣ
ଯାଇ ବାଳିକା ଦୁଇଟି ବଢିବାକୁ ଲାଗିଲେ । ସେମାନେ ଦୈନନ୍ଦ
ଜୀବନରେ ନିହାର ପାଖରୁ ବହୁତ କଥା ଶିଖି ପାରିଲେ । ମେନକ
ଦେବୀ ନିହାରକୁ ଦେଖି ତାଙ୍କର ଶୁଷ୍କ ଜୀବନର ପୁତ୍ରଶୋକ
ପାସୋରି ଦେଲେ । ଦୟାଲବାବୁଙ୍କ କାର୍ଯ୍ୟମୟ ଜୀବନ ଟିକିଏ ଉଣ୍ଟା
ହୋଇ ଉଠିଲା । ଅନେକ ସମୟରେ ନିହାର ବାବୁଙ୍କୁ କାର୍ଯ୍ୟ ତତ୍ତ୍ୱ
ବଧାନରେ ସାହାଯ୍ୟ କରେ ।



ବହୁଦିନ ପର ଘଣ୍ଟା ବମ୍ବେ ସହରର ଆଜି ଲୋକାରଣ୍ୟ ହୋଇପଡ଼ିଛି । ଗୃହଅଟେଣ୍ଡ ଖାଲି ଲୋକଙ୍କର ସୁଅ । ମୋଟର ଘୋଡ଼ାଗାଡ଼ି ରିକ୍ସା, ଟ୍ୟାକ୍ସି ବାସ୍ ଛୁଟି ଚାଲିଛି ଅବିଶ୍ରାମ ଗତିରେ, ବିଚାରି ରିକ୍ସାବାଲାଙ୍କ ମୁହଁରେ ଆଜି ବେଶ ଆନନ୍ଦ । ବେଶ ଦୁଇପଇସା ରୋଜଗାର ପନ୍ଥା ଆଜି ଫିଟିଛି । ସାହୁକାରର ଭଡ଼ା ଯାଇ କିଛି ଅଧିକ ମିଳିଯିବ । ଖବର କାଗଜ ମାନଙ୍କରେ ବଡ଼ ବଡ଼ ଅକ୍ଷରରେ ଫ୍ରଣ୍ଟ ପେଜରେସ୍ଥାନପାଇଛି । All India Art Exhi bition ସହରରେ ବହୁ ବିଶିଷ୍ଟ ଭଦ୍ରବ୍ୟକ୍ତି, କୋଟିପତି, ଲକ୍ଷପତି, ଅମଲା ଅଫିସର ନିମନ୍ତ୍ରିତ ହୋଇଅଛନ୍ତି । ଏହାଛଡ଼ା ପ୍ରଦେଶ ବାହାରୁ କେତେ ଲୋକ ମଧ୍ୟ ଆସି ଅଛନ୍ତି । ଟାଉନ ହଲରେ ସଜା ହୋଇଛି ଭିନ୍ନଭିନ୍ନ ସେକ୍ସନର ଆର୍ଟ । ପୁରସ୍କାର ବିତରଣ ଆରମ୍ଭ ହେଲା । ଜଣ ଜଣ ହୋଇ ଆସି ପୁରସ୍କାର ନେଲେ । ଗଭର୍ଣ୍ଣର ସାହେବ ପ୍ରତ୍ୟେକର ହାତ ବଢାଇଦେବା ପରେ ଅସଂଖ୍ୟ କରତାଳି ଧ୍ୱନିରେ ଆକାଶ ଫାଟି ପଡ଼ିଲା ପରି ଜଣାପଡ଼ିଲା । ସବୁଶେଷରେ ଲାଟସାହେବଙ୍କ ହାତରୁ ଶୈଳଜାନନ୍ଦପାଇଁ ମେଡ଼ାଲ Award' ଦିଆଗଲା । ଜଣେ ଅପରିଚିତ ଯୁବକ ହ୍ୟାଣ୍ଡସେକ୍ କରି ଚାଲିଲେ ହାତରେ ଏକ ସ୍ୱର୍ଣ୍ଣ ପଦକ ଧରି । ସେହି ସମୟରେ ଜଣେ ଭଦ୍ର ବ୍ୟକ୍ତିଙ୍କ ଫୁଟି ଉଠିଲା ଟିକିଏ ମୃଦୁହସ । ତାହା ଦେହ

ଲକ୍ଷ୍ୟ କର ନାହାନ୍ତି । ଲକ୍ଷ୍ୟ କରିବାର ବି ଦରକାର ନାହିଁ । କିନ୍ତୁ ଜଣେ ଶିକ୍ଷକ ମାର୍ଗ କରି ନେଇଛନ୍ତି ନିଶ୍ଚେତନ ଭାବରେ । ଏସ ହେଉ ଛନ୍ତି ନିଜେ ପୁରସ୍କାର ପ୍ରାପ୍ତ ଯୁବକ ଜଣକ । ସେତେବେଳେ ତାଙ୍କର ଅନ୍ତର ପୁଲକରେ ଉଦ୍‌ଗୁଣିତ ହୋଇଛି । ଭବିଷ୍ୟତରେ ସେତେ ଆଶା ଓ ଆକାଂକ୍ଷା ନେଇ । ସତକୁ ସତ ତାର ସୁନାସ୍ୱପ୍ନ ସଫଳ ହେଲା । ଦୁଇ ଦିନ ପରେ ଦୟାଲ ବାବୁଙ୍କ ଚେଷ୍ଟାରେ ସେ ଯାଇ ଆର୍ଟ ସ୍କୁଲରେ ଭର୍ତ୍ତି ହେଲା । ଦୟାଲ ବାବୁ ସ୍କୁଲର ପ୍ରଧାନ ପୃଷ୍ଠ ପୋଷକ । ତେଣୁ ସ୍କୁଲରେ ନାମ ଲେଖାଇବାରେ କିଛି ଅସୁବିଧା ହେଲନାହିଁ । ନିହାରର ମନ୍ୟ ଚିତ୍ରବିଦ୍ୟା ପ୍ରତି ଅଭିରୁଚି ତାର ଇଚ୍ଛା ଭବିଷ୍ୟତରେ ସେ ଜଣେ ଆର୍ଟିଷ୍ଟ ହେବ । ଏହି ଆଗ୍ରହକୁ ଦ୍ୱିଗୁଣିତ କରି ଦେଇଛି ଦୟାଲବାବୁଙ୍କ ଉତ୍ସାହ ଓ ପ୍ରେରଣା । ବହୁଦିନ ପରେ ନିହାରର ଜୀବନର ବଦଳି ଯାଇଛି । ସେ ଆଜି ଜଣେ ସ୍କୁଲ ଛାତ୍ର । ସ୍କୁଲଜୀବନର ମଧୁର ସଂସର୍ଗ ତେଣେ ଦିନ ହେଲା ଲୁଟି ଯାଇଥିଲା । ଜୀବନଟା ସବୁବେଳେ ଖାଁ ଖାଁ ବୋଧ ହେଉଥିଲା ବହୁଦିନ ପରେ ସେ ଛାତ୍ର ମଧୁର ସ୍ମୃତିଗୁଡ଼ିକୁ ଫେରି ପାଇଛି ସେଥିରେ ତାର ବେଶୀ ଆନନ୍ଦ । ସେ ଯେ ଅବସ୍ଥାରେ ଜଣେ ନାମଜାଦା ଆର୍ଟିଷ୍ଟ ହେବ ସେଥିପାଇଁ ନୂତନ ପୁସ୍ତକପତ୍ର ନିହାରବାବୁ ଏକ ମୋଟରରେ ବସି ଯାଆନ୍ତି ସ୍କୁଲକୁ । ଅନେକ ଗାଁ । ଗୃହଟା ପାଖରୁ ପହଞ୍ଚି ଯାଏ ସ୍କୁଲ ଫାଟକ ପାଖରେ । ଛୁଟି ହେବା ପରେ ପୁଣି ହୁଏ ସ୍କୁଲରୁ ପୂର୍ବରୁ ଧରି ନିହାର ଘରକୁ ଫେରେ । ଆର୍ଟ ସ୍କୁଲରେ ପଢିବା ଦିନ ଠାରୁ ନିହାରବାବୁଙ୍କ ଜୀବନ ଟିକିଏ ବଦଳି ଯାଇଛି । ହେବାର ସ୍ୱାଭାବିକ କଥା । ସେଥିପାଇଁ ମନ୍ଦ୍ର କିଛି ଅଭାବ ନାହିଁ । ଯାହା ଇଚ୍ଛା ବସ ଭରିବା ମାତ୍ରେ ବଜାରରୁ କିଣା ହୋଇ ଆସେ । ଏ ଭିତରେ ନିହାର ବଦଳି ଯାଇଛି ତାର ଅତୀତ ସଂସାର । ମୁକ୍ତ ବିହଙ୍ଗମ ସମ ଉଡ଼ି ବୁଲି

ସେ ମୁକ୍ତ ଆକାଶରେ । ଜୀବନରେ ଯେପରି କିଛି ଝଞ୍ଜା ନାହିଁ । ଯାହାକି ତାର ସୁନା ଚିତ୍ରକୁ ଧ୍ୱଂସ କରି ପାରିବ ।

ନିହାରର ପିଲା ଦିନୁ ଆର୍ଟ ପ୍ରତି ଭାରି ମମତା । କ୍ଲାସରେ ସେ ଏମେ ଖୁବ୍ ଭଲ କଲା । ଶିଳ୍ପଦାନରେ ଉପଯୁକ୍ତ ପରିସ୍ଥିତି ଅଭାବରୁ ତାର କଳା କୌଶଳ ବାହାରକୁ ଫୁଟି ପାରି ନ ଥିଲା । ପେଣ୍ଟିଙ୍ଗ୍ ଫାଇନ୍‌ଆର୍ଟ, ଓ ସ୍କେଚ୍ ଡ୍ରଇଁ ସବୁଥିରେ ନିହାର ହୁଏ ଫାଷ୍ଟ । ଏଥିରେ ଅନ୍ୟମାନେ ତା ପ୍ରତି ହୁଅନ୍ତି ଈର୍ଷାନ୍ୱିତ । ମାତ୍ର ନିହାର ସେ ସବୁକୁ ନଜର ଦିଏନା । ଏଥିମଧ୍ୟରେ ଛାତ୍ର ମହଲରେ ନିହାର ବିଷୟ ନେଇ ବଡ଼ ଚାଞ୍ଚଲ୍ୟ ଖେଳିଗଲା । ଛାତ୍ର ସମାଜରେ ସେ ନିହାର ରୂପେ ପରିଚିତ ନୁହେଁ । ସମସ୍ତେ ତାକୁ କହନ୍ତି ନିହାରବାବୁ —The young Artist କେବେ କେବେ ଏ କଥା ନିହାରର କାନରେ ପଡ଼ିଯାଏ ସେ ସେଥିରେ ନିଏ ଗର୍ବ ! ନିଜ ପ୍ରଶଂସା ଶୁଣି ଛାତି ତାର ଫୁଲିଯାଏ ଗର୍ବରେ । ପ୍ରତିଦିନ କ୍ଲାସକୁ ପଶିବା ସଙ୍ଗେ ସଙ୍ଗେ ଗୁଡ୍‌ମର୍ଣ୍ଣିଙ୍ଗ୍ ଶବ୍ଦରେ କାନ ତାର ଅତଡ଼ା ପଡ଼ିଯାଏ । ତା ପ୍ରତି ସମସ୍ତ ଛାତ୍ରଙ୍କ ଥାଏ ବେଶ ସମ୍ମାନ ଏବଂ ଖାତିର । କ୍ଲାସର ପ୍ରଥମ ପିଲା ସେ । ପ୍ରଫେସରଙ୍କ ଠାରୁ ଆରମ୍ଭ କରି ପ୍ରିନ୍ସିପାଲ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ଚିହ୍ନି ଗଲେଣି । Inter School Art competition ରେ ଗଭର୍ଣ୍ଣରଙ୍କ କପ୍ ପାଇଲା ଦିନଠାରୁ ସ୍କୁଲରେ ସେ ଖୁବ୍ ନାମ କରି ପାରିଛି ।

ଦ୍ୱିତୀୟବର୍ଷ ଆରମ୍ଭ ସଙ୍ଗେସଙ୍ଗେ ନିହାରର ମନରେ ସଂପୂର୍ଣ୍ଣ ପରିବର୍ତ୍ତନ ଆସି ପହଞ୍ଚି ଗଲା । ସ୍କୁଲରେ ଅନେକ ସମୟରେ ସେ ଚିନ୍ତାମଗ୍ନହୋଇ ବସିରହେ । କାରଣଟା କିନ୍ତୁ ଜଣା ପଡ଼େନା । ସାଙ୍ଗ ପିଲାମାନେ ଭାବନ୍ତି ନିହାର କିଛି ଗୋଟାଏ ନୂଆ ସ୍କିମ ଉଦ୍ଭାବନ ପାଇଁ ଚେଷ୍ଟା ଲଗାଇଛି କିନ୍ତୁ ଅସଲ କଥାଟା କାହାକୁ ଜଣାନାହିଁ ।

ଠିକ ଅଭିମିସନ୍ ନେବାର ଦୁଇଦିନ ପରେର ହଠାତ୍ ଧରନେ ତାହାର
ଆଖି ଦୁଇଟା ଅଲକ୍ଷିତ ଭାବରେ ମିଶିଗଲା ଦୁଇଟି ଚଳଚଳ ନୀଳ
ମୁଗ୍ଧ ଆଖିରେ । ସେହି ଶୁଭଚକ୍ଷୁ ମିଳନରେ ଜାତ ହେଲା ପ୍ରେମର
ଭାଙ୍ଗି ବାଟି, ସେଥିରେ ତାହାର ପାଇଛି ସ୍ୱର୍ଗୀୟ ଜ୍ୟୋତି । ଯୋର
ଯୋର କରି ତାର ଅମାନିଆ ଚକ୍ଷୁ ଦୁଇଟାକୁ ଟାଣିବାକୁ ସେ ଚେଷ୍ଟା
କରନ୍ତି । କିନ୍ତୁ ପାରନି । ସେହି ଭାଙ୍ଗି ସ୍ପର୍ଶରେ ହୃଦୟରେ ତାର
ଖେଳି ଗଲାଣି ବିଦ୍ୟୁତ୍ ପ୍ରବାହ । ସ୍କୁଲକୁ ଯିବାରେ ଅବହେଳା
ନାହିଁ ମାତ୍ର ଏବେ ଆଉ ତାକୁ ବିଶ୍ରାମ ମିଳେନାହିଁ । କ୍ଲାସକୁ
ପହଞ୍ଚିବା ମାତ୍ରେ ଗୋଟିଏ ପରେ ଗୋଟିଏ ଅନୁରୋଧ ପହଞ୍ଚିଯାଏ
ତା ପାଖରେ । ତାହା ସେ ଏଡ଼ି ପାରେନା । ଯଥା ଭଳରେ ପ୍ରତିମା
ଦେବୀଙ୍କ ଖେଦ ମଧ୍ୟ ମନ୍ଦିରେ ମନ୍ଦିରର ପଡ଼ିଯାଏ । ତାହାର
ବାବୁ ତାହାଙ୍କ ସଖୀ ମାନଙ୍କ ଏହି ଆଦେଶରେ ବ୍ୟସ୍ତ ନ ହୋଇ
ବରଂ ସେଥିରୁ ପାଆନ୍ତି ଆନନ୍ଦ । ସେହି ଆନନ୍ଦ ସୁଖରେ ପାଲଟି
ଭଳି ଲକ୍ଷିତ ହୁଏ ଭବିଷ୍ୟତର କେତେ ସୁଖ ଆଶା । ପ୍ରତିମାଦେବୀଙ୍କ
ଖାତା ଫେରାଇ ନେଲାବେଳେ ତାହାର ହାତ ଥରି ଉଠେ, ବାହାରକୁ
ଦେଖିବା ଭଳି ଟିକିଏ ଲଜ୍ଜା ଲଜ୍ଜା ହୋଇ ସେ ଭଦ୍ରତା ଗାଢ଼ ସ୍ୱରରେ
କହି ପକାନ୍ତି—ଧନ୍ୟବାଦ । ପ୍ରତିମାର ସୁନ୍ଦର କମନୀୟ ବାହୁରୁ ଖସି
ପଡ଼େ ନୋଟ ଖାତାଟି ତାହାର ହାତକୁ । ସେ ତାହାର ଯଥାସାଧ୍ୟ
ଚେଷ୍ଟାକରି ପ୍ରଶ୍ନମାନ ତ୍ରୁଟି ଗୁଡ଼ାକ ଅତି ସଂଶୋଧନ କରେ । ସମୟ
ସମୟରେ ସମୟର ଅଭାବ ଛଳନା କରି ତାହାର ନୋଟ ଖାତା
ଖଣ୍ଡିକ ନେଇଯାଏ ଘରକୁ । କେତେ କେତେ ଭାବନା ଆସି ପହଞ୍ଚେ ଏ
ତାର ମନରେ । ପର ମୁହୂର୍ତ୍ତରେ ଭାବେ ପ୍ରତିମା କେଉଁଠି ସେତେ
ମୁହୂର୍ତ୍ତକ ପାଇଁ ତାର କଥା ଭାବୁଥିବ ? ତାକୁ ଅସମ୍ଭବ ଜଣାପଡ଼େ
ଅଣ ମରଣରେ ତାର ଉଦ୍ଭେଦ ଯାଏ ନେଇଁ ଦୂର ଦିଗ୍ ବଳୟରେ

ପରୀକ୍ଷା ନିକଟ ହେଲେ ନିହାରର ଆଉ ବିଶ୍ରାମ ନ ଥାଏ । ସାଧାରଣତଃ ସ୍କୁଲ ମହଲରେ ପାଠପଢାର ଦାୟିତ୍ୱ ଏବଂ ଗୁରୁତ୍ୱ, ଯତନ ବିବେଧ ଏବଂ ସ୍ପନ୍ଦର ତାତ୍ପର୍ଯ୍ୟ ପରୀକ୍ଷା ସମୟରେ ବିଶେଷ ଭାବରେ ଅନୁଭୂତ ହୋଇଥାଏ । ସେହି ସମୟରେ ସେମାନେ ଉପ-ଲବ୍ଧି କରି ପାରନ୍ତି, ପାଠ ପଢିବା କେତେ କଷ୍ଟ । ପରୀକ୍ଷା କ୍ରମେ ନିକଟ ହୋଇ ଆସିଲା । ସେକେଣ୍ଡ ଟର୍ମ ପରୀକ୍ଷା ପାଇଁ ଖାତା ଗୁଡିକ ଆଠଦିନ ଭିତରେ ପୂର୍ଣ୍ଣ କରି ପ୍ରଫେସରଙ୍କ ପାଖରେ ଦାଖଲ କରିବା କଥା । ତେଣୁ ସମସ୍ତଙ୍କ ପରି ସେହି ଭାର ପଡିଲା ନିହାର ଉପରେ । ତାର ଆଉ ତର ରହିଲା ନାହିଁ । କେତେ ସିଗାରେଟ ଅପୂର ଅସୁସ୍ଥ ହିଏ କହୁଛି,—

"ମୋର ପାଳି ଭାଲ୍ ପଡ଼ିବ । ଡକ୍ଟରର କହିନାସ୍ ପାଇଁ ମୁଁ ଗୁଲଗଣ୍ଡ ଟିକେଟ ଅଡ଼ଭାନ୍ସ ବୁକ୍ କରି ରଖିଛି ; ମୋର ଡ୍ରଇଂ ଗୁଡିକ ଚଞ୍ଚଳ ହେବା ଦରକାର, କିନ୍ତୁ ବିଶେଷ ପ୍ରତିମା ଏଥିରେ ବଡ ହରସ୍ଥଣରେ ପଡ଼ିଲା । ତାର ଡ୍ରଇଂ ଗୁଡାକ ପୂର୍ଣ୍ଣ ହେବାର ତ ଦୂରର କଥା ଅଧା ଅଧି ମଧ୍ୟ ହୋଇ ନ ଥିଲା । ଅନେକ ସମୟରେ ନିହାର ପାଖକୁ ଯାଇ ଅନୁରୋଧ କରିବାକୁ ଲାଗେ । ପର ମୁହୂର୍ତ୍ତରେ ସାହସ ଭାଙ୍ଗିପଡେ ।

ଖରାଦିନ ଦୁଇ ପହର । ସୂର୍ଯ୍ୟଙ୍କ ପ୍ରଚଣ୍ଡ କିରଣ ସବୁକୁ ଅଗ୍ନି ମୟ କରି ଦେଉଛି । ସୂର୍ଯ୍ୟଙ୍କର ତେଜ ଟିକିଏ କମିଯିବା ପରେ ନିହାର ତାର ପଢାଘର ଝରକାଟି ଖୋଲିଦେଇ ଆରାମରେ ବସିଛି । ଚାକର ଟୋକା ଆସି ଖବର ଦେଲା; —

—ବାବୁ ଆପଣଙ୍କୁ କିଏ ଜଣେ ଡାକୁଛି ।

ବାବୁ କହିଲେ—ଚଞ୍ଚଳ ତାଙ୍କୁ ଭିତରକୁ ଡାକି ଦେଉନୁ କିଆଁ, ଲୋକଟି ବାବୁଙ୍କ ହାତକୁ ନେଳି ଲଫାପାଟି ବଢେଇ ଦେଇ ଗୁହିଁ

ରହିଲା । ଶିଶିର ବାବୁ ଅସ୍ଥିର ହୋଇ ଚିଠିଟା ଖୋଲି ପଢିଲେ ।

ଗୋପାଳ ବସ୍ତି ୫ ନମ୍ବର ଘର
ପ୍ରମୋଦ କୁଟୀର

ପ୍ରିୟ ଶିଶିର ବାବୁ !

ଚିଠିଟାପାଇ ଚମକି ପଡ଼ିବେ ନାହିଁ । ଆପଣଙ୍କୁ ଦେଖିଲା ଦିନୁ ଝାଡ଼ିକି ଅନ୍ତରର ସ୍ନେହ ଟିକକ ଆପଣଙ୍କ ପାଖରେ ଲାଗିରହିଛି । କାରଣ କଅଣ ମୁଁ ବୁଝି ପାରେନା ବୁଝିବାକୁ ମଧ୍ୟ ଚେଷ୍ଟା କରେନା ଆପଣଙ୍କ ସହିତ କଥାବାର୍ତ୍ତା ଆରମ୍ଭ କରିବାକୁ ଚେଷ୍ଟାକରେ ଏବଂ କରିଛି ମଧ୍ୟ ଅନେକ ଦିନ, କିନ୍ତୁ ମନର କଥା ମନରେ ରହେ । ଶତ ଚେଷ୍ଟା କଲେ ମଧ୍ୟ ସାହସ ହୁଏ ନାହିଁ । ଝିଅ ଛୁଆଙ୍କୁ ତ ସେ କଥା । ଆଜି ଆପଣଙ୍କ ମୋପାଇଁ ସାମାନ୍ୟ କଷ୍ଟ ସହିବାକୁ ପଡ଼ିବ । ନୋଟ୍ ଖଣ୍ଡିକ ପଠାଇଲି । ଦୟା କରି ମୁଁ ଉଦ୍ଧାର କରିଦେଲେ ଉପକୃତ ହୁଅନ୍ତି ।

କିଛି ଭାବିବେ ନାହିଁ—ମୋର ଆଶା ।

ସ୍ନେହର
ପ୍ରତିମା

ଚିଠିଟା ପଢି ଶିଶିର ଦେହରେ ଏକ ଚମକ ଖେଳିଗଲା । କୋଣସିପ୍ରକାରେ ସ୍ଥିର ଭାବରେ ବୁଲ୍ ଗୁଡ଼ାକ ଶେଷ କରି ଦେବା ପାଇଁ ଚେଷ୍ଟା କଲା ।

ସେହିଦିନଠାରୁ ତାଙ୍କର ପ୍ରେମ ବୀଜ ଅଙ୍କୁରିତ ହେଲା । ମନେମନେ ଗଢି ବସିଲେ ସେ ଭବିଷ୍ୟତର କେତେ ଆଶା-ସୌଧ ତହିଁ ପରଦିନ ସ୍କୁଲରେ ପ୍ରତିମା ତାହାର ଖାତା ଖଣ୍ଡିକ ଫେରି ପାଇଲା । ବୁଲ୍ ଗୁଡ଼ିକ ଠିକ୍ ହୋଇ ଥିବାର ଦେଖି ମନ ତାର ବେଶ ଖୁସି । ସଙ୍ଗେ ସଙ୍ଗେ ଶିଶିର ପ୍ରତି କେତେ କୃତଜ୍ଞତା ଜାଗି ଉଠିଲା । ସେହିଦିନଠାରୁ ସେ ଠିକ କରି ନେଲା ଶିଶିରକୁ ସେ

ଅନ୍ତର ଖୋଲି ଭଲ ପାଇବ । ତାହାର ଯେ ଜଣେ ଅଭିଷ୍ଟା । ପ୍ରତିମାହିଁ ତାଙ୍କୁ ଜୀବନରେ ପ୍ରକୃତ ସାହାଯ୍ୟ ଓ ସହାନୁଭୂତି ଦେଇ ପାରିବ ଜଣେ ଅଭିଷ୍ଟ ହିସାବରେ । କିନ୍ତୁ ଏ କଳ୍ପନା ଯେ ବଡ଼ ଗମ୍ଭୀର୍ । ତାର ଭାବନା ଅନୁଯାୟୀ ତାହା ଏତେ ସରଳ ଓ ସହଜ ସାଧ୍ୟ ନୁହେଁ ଏଥିପାଇଁ ସେମାନଙ୍କୁ କେତେ ଲାଞ୍ଛନା, ଅପମାନ, ଅପବାଦ ଓ ସମାଜ କଷଣର ସମ୍ମୁଖୀନ ହେବାକୁ ପଡ଼ିବ । ଜୀବନରେ କେତେ ଝଞ୍ଜା, ବତାସ ଅତିକ୍ରମ କରିବାକୁ ପଡ଼ିବ ତାଙ୍କୁ । ଏ ସମସ୍ତ ପାଇଁ ତାହାର ପ୍ରସ୍ତୁତ କି ନା ?

ପ୍ରତିମା ଆଶା କରିଥିଲା ତାର ଚିଠିର ପ୍ରତ୍ୟୁତ୍ତର । ଗୃହକ ପଥ ଜଗାଇ ରହିଥିଲା ସେ ତାହାର ପାଖୁ ମଧୁର ଉତ୍ତର ପାଇବ ବୋଲି । ଉତ୍ତର ସେ ପାଇଲନା । ତା ବଦଳରେ କିନ୍ତୁ ତାଙ୍କୁ ମିଳିଲା ମଧୁର ମୃଦୁହାସର ଚାହ୍ନି । ସେତିକିରେ ସେ ସନ୍ତୁଷ୍ଟ ନୁହେଁ । ସେ ଚାହେଁ ତାହାର ଠାରୁ ଅଧିକ କିଛି ବଡ଼ ଜିନିଷ । ଯାହା ତାର ଜୀବନରେ ଆଣି ପାରିବ ଚିର ଶାନ୍ତି ଏବଂ ତାଙ୍କୁ ଦେଇ ପାରିବ ସୁଖ ମୟ ସରସ ଜୀବନର ମଧୁର ସନ୍ଧାନ ।

ପ୍ରତିମାର ମନର ଆବେଗ ଆଉ ଲୁଚି ରହିଲା ନାହିଁ । ମନ ଖୋଲି ଅନ୍ତରର କଥାଗୁଡ଼ିକ ପୁଣି ସେ ଲେଖିବସିଲା ତାହାରପାଖକୁ

ପ୍ରମୋଦ କୁଟୀର

ପ୍ରିୟ ତାହାର ବାବୁ

ଆଶା କରିଥିଲି ଆପଣଙ୍କ ହାତ ଲେଖା ଚିଠିଖଣ୍ଡିଏ ପାଇବି ବୋଲି । ଗୃହକରଠାରୁ ସମସ୍ତ କଥା ଶୁଣିଲି । କାହିଁକି ମନ ମାନିଲା ନାହିଁ । ଆପଣଙ୍କ ପରିଶ୍ରମ ପାଇଁ ମୁଁ ଚିର କୃତଜ୍ଞ । ମନ ନଦେଇ ହତାଶ କରିବେ ନାହିଁ । ଆଉ ଅଧିକ କଅଣ ଲେଖିବି । ଇତି ।

ସ୍ନେହର ପ୍ରତିମା

ନିହାର ଆଖି ଚିଠିର ଶେଷ ଧାଡ଼ିଟା ଉପରେ ବିଶେଷ ଭାବରେ ପଡ଼ିଲା । ବହୁ ଦିନରୁ ଚିଠି ଦେବ ଦେବ ବୋଲି ଭାବୁଛି—ହେଲେ ତାର ସାହସ ଭାଙ୍ଗି ଭାଙ୍ଗି ପଡ଼ୁଛି । ମାତ୍ର ଆଜି ପ୍ରତିମାର ଅନୁରୋଧ ସେ ଏଡ଼ି ପାରିବ ନାହିଁ । ଉପର ଭାଗରୁ ସାଇଟିଙ୍ଗ ପେପରଟା ବାହାର କରି ସେ ଲେଖିବସିଲା ଚିଠି । ବହୁ ଦିନର ଆଶା ଓ ଅନୁରାଗ ଖୋଲି ଦେବା ପାଇଁ କଲମ ମୁନ ତାର ଯଥେଷ୍ଟ ନୁହେଁ ଦୁଇଥର ଲେଖି କାଗଜ ଖଣ୍ଡିକ ଛିଣ୍ଡାଇଦେଇଥିଲା । ଇଚ୍ଛା—ଚିଠିର ପ୍ରତ୍ୟେକ ଶବ୍ଦରେ ସେ ଫୁଟାଇବ ଅର୍ଥ । ସେ ଜାଣେନା ଅନ୍ତିମ ନା । ଚିଠି ଲେଖି ଖଣ୍ଡିଏ ଧଳା ଖୋଲ ଭିତରେ ପୂରାଇ ଚିଠିଟା ଗୁଞ୍ଜି ଦେଲା ପ୍ରତିମାର ଖାତାରେ ସେ ଦିନ ନିହାର ହୃଦୟରେ ନୂତନ ଆନନ୍ଦର ଢେଉ ଖେଳି ଉଠୁଥାଏ । ଅନ୍ୟଦିନ ପରି ପ୍ରତିମା ହାତକୁ ନୋଟ ବୁକ୍‌ଟି ବଢ଼ାଇ ଦେବା ପୂର୍ବରୁ ଆଜି ମନରେ ସେ ଅନେକ ଭାବିଲା ନିହାରର ଏ ନୂତନ ଭାବ ର କାରଣ କଅଣ ପ୍ରତିମା ମଧ୍ୟ ଠିକ କରି ପାରେନା ।

ଅନ୍ୟଦିନ କ୍ଲାସକୁ ଆସିବା ମାତ୍ରେ ସେ ଖାତା ଖଣ୍ଡିକ ପାଇ ଯାଏ । କିନ୍ତୁ ଆଜି ନିହାର ତାକୁ ସଂକୋଚିତ ମନରେ ଖାତାଟି ବଢ଼ାଇଦେଇଛି । ଏହିପରି ନାନାକଥା ଭାବି ପ୍ରତିମା ସାବଧାନତାସହ ନୋଟବୁକଟି ଖୋଲିଲା ହଠାତ୍ ଲଫାଫ ଟି ଦେଖି ମନରେ ପୁଲକିତ ହୋଇ ଉଠିଲା । ଚିଠିଟା ବ୍ୟାଗ ଭିତରେ ରଖି ଦେଇ କ୍ଲାସ କାମରେ ଲାଗିଗଲା । ହେଲେ କୌଣସିଥିରେ ତାର ଇଚ୍ଛା ନାହିଁ । ଏକମାତ୍ର ଚିନ୍ତା—ଛୁଟି ପରେ ଘରକୁ କିପରି ପଳାଇବ । ଦେହ ଖରାପର ବାହାନା କରି ପଳାଇ ଯିବ ତ ମା ଘରେ ଶଙ୍କିତ ହେବେ । ଏହିପରି ଦୋଦୋପାଞ୍ଚ ହୋଇ ସ୍କୁଲରେ ବସି ରହିଲା । ଛୁଟୀପରେ ଯାଇ ଦେଖେତ ଗାଡ଼ି ପାଖରେ ଦେବାଶୀଷ ହାଜର । ସଙ୍ଗେ

ସଙ୍ଗେ ଅର୍ଦ୍ଧରକ୍ତଦଳ ଭଜନରାମ୍ ପୂର୍ଣ୍ଣ ଗାଡ଼ି ଚଳାଅ । ଆଜି ହୁସିଆରେ
—। ନିର୍ବୋଧ ଭଜନ ଅବା ଏଥିର ମର୍ମ ବୁଝିବ କିଅଣ ? ପ୍ରତିମା
ଗାଡ଼ିରେ ବସିଲା । ଦୁଇ ଘୋଡ଼ାଙ୍କ ଉପରେ ଘୋର ଦୁଇଚାବୁକ
ଦେଇ ଭଜନରାମ ଗାଡ଼ି ଛୁଟାଇ ଦେଲା । ପବନ ବେଗରେ ଗାଡ଼ି
ଚଳିଲା । ଗାଡ଼ିରୁ ଓହ୍ଲାଇ ପ୍ରତିମା ପଢ଼ାଘର ଆଡ଼େ ଦାଣ୍ଡେଇଲା ।
ଦରଜା ଖୋଲି ତରତର ହୋଇ ସୁଅନସ ଚିଠିଟା ଉପରେ ଆଖି
ବୁଲାଇ ନେଲା । ଅନେକଥରେ ପଢ଼ିଲା । ତାହାଙ୍କ ମନ ମାନିଲା ନାହିଁ ।
ତାଉ ଗୁଣଥର ପଢ଼ି ଚିଠିଟା ସୁଟକେଶରେ ବନ୍ଦ କରି ରଖିଦେଲା ।
ମନେ ମନେ ଭାବିଲା ନିହାର ବାବୁ ପ୍ରକୃତ ଅଭିଜ୍ଞ । ଲେଖା ର ପ୍ରତି
ଛାଡ଼ରେ ସ୍ପୃହା ଉଠିଛି ଅର୍ଥ । ଅଜୟର ଗୁଣ୍ଡାଙ୍କ ମୁକ୍ତାବାଦୀ ଭାବଧାରା
ଟେ ବଡ଼ ଭଲ ଲାଗିବ । ପର ମୁହୂର୍ତ୍ତରେ ହାତ ଘଡ଼ିକୁ ଅନାଇ
ଦେଖେ ସମସ୍ତ ଛଅଟା ଉପରେ । ନିତ୍ୟ କର୍ମ ଶେଷ ନ କରି ଚିଠି
ପଢ଼ିବାରେ ବ୍ୟସ୍ତ ହୋଇ ପଡ଼ିଛି ସେ । ସନ୍ଧ୍ୟା ହୋଇ ଯାଇ ଥିବାରୁ
ଲାଇଟ୍ଟି ଲଗାଇ ବସି ପଢ଼ିଲା ନିଜ ଘରରେ । ଲାଇବ୍ରେରୁ ଅଣି-
ଥିବା Suggestion for Fine Arts ବହି ଖଣ୍ଡିକ ଖୋଲିପକାଇ
ଲାଗିଗଲା ପୃଷ୍ଠା ଓଲଟାଇବାରେ । ମାତ୍ର କୌଣସିଥିରେ ମନ ଲାଗିଲା
ନାହିଁ ସଙ୍ଗେ ସଙ୍ଗେ ଚିଠିର ଉତ୍ତରଲେଖିବାକୁ ଇଚ୍ଛା ହେଲା । ମାତ୍ର
ସନ୍ଧ୍ୟାପଢ଼ିଲେଯାଇଚଲେ । ଅନ୍ତତଃ ଓଭର ଲୁକ୍ ଟାଏ ହୋଇନଥିଲେ
ଅଡ୍ଡୁଅନର ପଡ଼ିବାକୁ ହେବ । ବନ୍ଧଟା କସୁକର ଅଣିବାର ଦୁଇ
ପ୍ରାନ୍ତ ହୋଇ ଗଲାଣି । ବାହାଟାର ପୁଣି ଉମାଶ୍ରେ ବେଣୀ । ଏହାପର
ନା ଭାବନାରେ ପ୍ରତିମା ମନଟା ଗୁମ୍ ମାରି ବସିଲା । ବେଣ୍ଟିକଟାରେ
ପି ଗାଲ ଅନାଇ ରହିଛି ଚିନ୍ତାଶୂନ୍ୟ ହୋଇ

ଏବେ ନିହାର ଚିଠିର ଉତ୍ତରଣ ପାଇବ ବୋଲି ଗୁହଁ
ସିଛି । ମନଟାରେ ତାହାର ଶିହରଣ ଖେଳି ଯାଉଛି ଅଦରର

ପ୍ରତିମାର ହାତ ଲେଖା ଚିଠି ଖଣ୍ଡିକ ମିଳାଇ ଭାବ । ସ୍କୁଲକୁ ଆସି ହତାଶ ହୋଇ ପଡ଼ିଲା । କ୍ଲାସରେ ଦେଖେ ପ୍ରତିମା ଅନୁପସ୍ଥିତ ପ୍ରତିମା ଛୁଟିନେଇ ଘରେ ରହୁଛି । ନିହାର ମନ ନୈରାଶ୍ୟ ପୂର୍ଣ୍ଣ ହୋଇ ପଡ଼ିଲା । ସୁଖର ଆଶା ତାର କୁଆଡ଼େ ମଉଳି ଗଲା ।

ଦୁଇଦିନ ପରେ ଯେତେ ବେଳେ ପୁଣି କ୍ଲାସରେ ଦେଖାହୁଏ ପ୍ରତିମା ଲକ୍ଷ୍ୟ କରି ନେଲା—ନିହାର ଖୁବ୍ ଗମ୍ଭୀର ହୋଇ ଯାଇଛି । ବୁଝି ପାରିଲାନାହିଁ କାରଣଟା କ'ଣ । ଛୁଟି ହେଲା । ନିହାର ବାଇକରେ ବସି ଚାଲିଲା ସିଧା ଘରକୁ, ସେଦିନ ବୁଲିଯିବା ପ୍ରୋଗ୍ରାମ ବନ୍ଦ ରହିଲା ସନ୍ଧ୍ୟା ନ ହେଉଣୁ ପଢ଼ାଘରର ସୁଇଚ ଟିପିଦେଇ ନିହାର ବସିଗଲା ପାଠପଢ଼ାରେ ପଡ଼ିବାକୁ ମନ ନାହିଁ । ଉପରକୁ ଜଣାପଡ଼ୁଛି ଯେପରି ଯୋଗରେ ସେ ନୂଆ ବିଜ୍ଞାନ ପଢ଼ାଟା ଆଜି ଆରମ୍ଭ କରି ଦେଇଛି । writing padବାହାର କରି ଲେଖିବସିଲା ଖଣ୍ଡିଏ ଚିଠି ।

ଡବ୍ଲ୍ ବିଲ୍ଡିଂ ନମ୍ବର ୨

ସ୍ନେହର ପ୍ରତିମା,

ଭାବି ନଥିଲି ତୁମେ ଏତେ ଦୁଷ୍ଟ ବୋଲି । ଆଶାଦେଇ ନୈରାଶ୍ୟକୁ ନିମନ୍ତ୍ରଣ କରିଦିଅ । ତୁମେ ମାଇପି ଜାତିଟା ଏମିତି । ... ... ... କ'ଣ ଗୁଡ଼ାଏ ବାଜେ ଲେଖି ପକାଇଲି । କିନ୍ତୁ ଭାବିବ ନାହିଁ ତୁମଙ୍କ ପ୍ରତିମା ତୁମକୁ ଅନ୍ତର ସହିତ ମୁଁ ଭଲପାଏ । ଏହି ଭଲ ପାଇବାଟା ଶିଖିଛି ମୁଁ ତୁମଠାରୁ । ଆଗରୁ କଦାପି ନୁହେଁ । ଏଇ କେତେଦିନ ତୁମ ସାଙ୍ଗରେ ମୋର ପରିଚୟ ହେବା ଦିନଠୁ ।

କ୍ଲାସରେ ତୁମକୁ ନ ଦେଖିଲେ ମୋର ମନେହୁଏ ସତେ ଯେପରି କିଛି ନା କିଛି ମୁଁ ହରାଇ ବସିଛି । ଅନ୍ତତଃ କେତେକ କ୍ଷଣ କିଛି ଭାବିବ ନା । ଇତି ।

ତୁମ୍ଭର ଅଧମ ବନ୍ଧୁ

ଚିଠି ଲେଖା ଶେଷ କରି ନାହାର ବଢ଼ାଇ ଦେଲ ଅଜାମ ଖାଁ ହାତକୁ । ନିର୍ଦ୍ଦେଶ ଦେଲ ନୋଟ ବୁକ୍ ଏବଂ ବାକ୍ସଟା ପ୍ରତିମା ଘରେ ଦେଇ ଆସିବାକୁ । ଅଜାମ୍ ଖାଁ ଜାଣେ ନା ଏ ଭିତର ରହସ୍ୟ କିନ୍ତୁ ନାହାରର ଅଜାମ ଖାଁ ଉପରେ ଭାରି ବିଶ୍ୱାସ । 'ଚେଣ୍ଡ, ଆଜି ଏ ଗୁପ୍ତଡାଏରିକୁ ଲଦି ଦିଅ ଗଲ ତାର ଉପରେ । କଭର୍ ଉପରେ ଠିକଣାଟା ଲେଖା ହୋଇଥିବାରୁ ଅଜାମଙ୍କୁ ବେଶୀ ହଇରାଣ ହେବାକୁ ପଡ଼ିଲ ନାହିଁ । ପ୍ରତିମା ଘରେ ପହଞ୍ଚି ଡ୍ରାଇଭର ଅତି ଭକ୍ତିର ସହିତ ଚିଠିଟା ପ୍ରତିମା ହାତକୁ ବଢ଼ାଇଦେଲ ଅଳ୍ପ ହସି ଦେଇ ସେ କହିଲ ଧନ୍ୟବାଦ । ତର ତର ହୋଇ ପ୍ରତିମା ଚିଠିଟା ପଢ଼ିବାକୁ ଲାଗିଲ । ଅଜାମ୍ ଖାଁ ଲକ୍ଷ୍ୟ କରି ନେଲ ପ୍ରତିମା ମୁହଁରେ ଏକ ନୂଆ ଭାବ ଖେଳି ଯାଉଛି । ହସ ପରିବର୍ତ୍ତେ ଦେଖା ଯାଉଛି ଚିନ୍ତା ଓ ଅନୁଶୋଚନା ର ଚିହ୍ନ । ଅତି ନିବିଡ଼ ଚିତ୍ତରେ ମନପ୍ରାଣ ଲଗାଇ ପ୍ରତିମା ଚିଠି ପଢ଼ିବାରେ ବ୍ୟସ୍ତ । ଅଜାମ୍ ଖାଁ ପ୍ରତି ତା'ର ଲକ୍ଷ୍ୟ ନାହିଁ ଅଳ୍ପ ସମୟ ପରେ ମୁଣ୍ଡ ଟେକି ଉପରକୁ ଦେଖେତ ଡ୍ରାଇଭର ସମ୍ମୁଖରେ ଛିଡ଼ା ହୋଇଛି । ହଠାତ୍ ପଚ୍ଛିଲଛୁ ତୁମେ ଏପରି ଠିଆ ହୋଇ ରହିଲ ଯେ—

ଉତ୍ତର ଆସିଲ ନାନୁ ବାବୁ କହିଛନ୍ତି ବର୍ତ୍ତମାନ ଉ... ... ... ପ୍ରତିମା ବୁଝି ପାରିଲ ତାର ଉଦ୍ଦେଶ୍ୟଟା କଅଣ । ସଞ୍ଜବେଳେକୁ ତାର ହାତରେ ଚିଠି ପଠାଇବ ନିର୍ଭର ଜବାବ ଦେଇ ଲୋକଟିକୁ ବିଦାୟ ଦେଲ । ଅଜାମ୍ ଖାଁ ଫେରିଲ ଦୁଃଖ ମନରେ, କାମଟା ଯେ ସେ ହାସଲ କରି ପାରିଲ ନାହିଁ ଏଥିପାଇଁ ମନରେ ତାର ଦୁଃଖ । ନାହାର କିନ୍ତୁ ସମସ୍ତ ବିଷୟ ବୁଝି ପାରିଲ ଅଜାମ୍ ପାଖରୁ ବହୁତ ଆଶାରେ ସେ ନିର୍ଦ୍ଧାରିତ ସମୟକୁ ଅପେକ୍ଷା କରି ବସିଲ । ଠିକ୍ ସନ୍ଧ୍ୟା ସମୟରେ ପ୍ରତିମାର ଗୁଜର ଦେଇଗଲ ଗୋଟିଏ ଲଫାଫା । ଲେଖାଅଛି—

ପ୍ରମୋଦକୁଟୀର

ସ୍ନେହର ନିହାର ବାବୁ !

ଏବେ ଆଉ ଚିଠି ଲେଖିବାକୁ ମନ ଲାଗୁନି ଚିଠି ଲେଖିବାର ଅର୍ଥ ଆଉ କିଛି ନୁହେଁ—ଅନ୍ତରର ବେଦନାଟିକୁ କମେ ଗୁଛୁ ଗୁଛୁଡର କରବା ଛଡ଼ା । କାଗଜରେ ସ୍ଥାନ ନାହିଁ, କଲମ ମୁନରେ ଶକ୍ତି ନାହିଁ । ମୋର ଅନ୍ତର କଥା ପ୍ରକାଶ କରିବାକୁ । ଏତିକିରୁ ସମସ୍ତ କଥା ବୁଝି ପାରିବେ । ମା କାହ୍ନୁଙ୍କ ଅପଣଙ୍କ ବସନ୍ତ ଚସ୍ତର ପତ୍ରଉର । କହୁଛି କାଲି ସ୍କୁଲପରେ ଅପଣଙ୍କୁ ଡାକି ଆଣିବାକୁ ଏଥିରେ ଖୁସି ହେବ ବୋଲି ମୋର ଆଶା । ଇତି ।

ଅଭାଗିନୀ

ଏହୁ ଚିଠି ଖଣ୍ଡିକ ପାଇ ନିହାରର ଆଶା ପ୍ରଭାତ ଫୁଟିଉଠିଲା ସମସ୍ତ ଚିଠିର ଉତ୍ତର ଯେପରି ତାକୁ ଏହୁ ଖଣ୍ଡିକରେ ମିଳିଯାଇଛି । ମନରେ ତାର ଖୋଲିଗଲା ଅତୀତ ଓ ଭବିଷ୍ୟତର କବାଟ । ସୁନା ସ୍ୱପ୍ନ ମନେ ମନେ ଠିକ୍ କରି ନେଲା ଏପରି ସୁବର୍ଣ୍ଣ ସୁଯୋଗ ହରାଇବାର ନୁହେଁ । ପ୍ରତିମାର ନିମନ୍ତ୍ରଣ ସେ ଅକୁଣ୍ଠିତଚିତ୍ତରେ ଗ୍ରହଣ କରିନେଲା

ସ୍କୁଲ ଛୁଟୀ ନ ହେଉଣୁ ପଜାମ୍ ଗାଁ । ଆସି ଫାଟକ ପାଖରେ ହାଜର । ପ୍ରତିମା ଏବଂ ନିହାର ବସିଲେ ଗାଡ଼ି ପିଠିରେ । ଡ୍ରାଇଭର ହର୍ଣ୍ଣ ଦେଇ ଛୁଟାଇଲା ମୋଟର । ଘଣ୍ଟାକରେ ସେମାନେ ପହଞ୍ଚିଗଲେ ପ୍ରମୋଦ କୁଟୀରରେ । ଇଙ୍ଗିତ କମେ ଡ୍ରାଇଭର ଫେରିଲା । ନିହାର ଏବଂ ପ୍ରତିମା ଗ୍ଲଲ୍ଟଲ ରୁମ୍ ଭିତରକୁ । ପ୍ରତିମା ଆଗ୍ରହରେ ନିହାରକୁ ତାର ପଢ଼ାଘରକୁ ନେଇ ଗଲା । କୋଠରୀଟି ଖୁବ୍ ଭଲ ଭାବରେ ସଜା ହୋଇଛି ସମସ୍ତ ଜିନିଷ ସଦ୍ୟ ସୁସଜ୍ଜିତ । ଟେବୁଲପର ଅନୁମିତ ହେଉ ଥିଲା । ନିହାର ଠିକ କରି ନେଲା ବନ୍ଧୁଙ୍କ ଆଗମନ ଉପଲକ୍ଷ୍ୟରେ ଏ ସବୁ ପ୍ରତିମାର ଅଭିନବ ଚେଷ୍ଟା । ପ୍ରତିମାର ତେଜେବାରେ

ମନଟାକୁ ପସନ୍ଦ ନ କରି ସେ ରହି ପାରିଲା ନାହିଁ ।

ସଙ୍ଗେ ସଙ୍ଗେ ପାର୍ଟିରୁ ତାର ବାହାରି ପଡ଼ିଲା । ବାସ୍ତବିକ ପ୍ରତିମା କଳାପ୍ରିୟ ତ୍ରୁମର କି ଚମତ୍କାର ଆଦର ।

ନିଜର ପ୍ରଶଂସା ଶୁଣି ପ୍ରତିମା ବିବ୍ରତ ହୋଇ ପଡ଼ିଲା । ନିହାର ବାବୁଙ୍କ ପରି ଶିକ୍ଷିତ ମୁହଁରୁ ଏପରି ପ୍ରଶଂସା ବାହାରିବା ସହଜ କଥା ନୁହେଁ ତେବେ କଅଣ ନିହାର ବାବୁ କଥାଛଳରେ ଏପରି କହି ପକାଇଲେ । ପ୍ରତିମା କିଛି ଠିକ୍ କରି ପାରିଲା ନାହିଁ ସେ ମନେ ମନେ ଭାବିଲା ନା ଏହି ନିହାର ବାବୁଙ୍କ ପରିହାସ--ପ୍ରଶଂସା ନୁହେଁ !

କିଛି ସମୟ ଖୁସି ଗପ ସପ ହେବା ପରେ ସ୍ତ୍ରୀକର ଟୋକା ଟିଫିନ୍ ଧରି ହାଜର ହେଲା । ଦୁହେଁ ଏକାଠି ବସି ଜଳଖିଆ କଲେ । ପ୍ରତିମା ମନେ ମନେ ଭାବେ ନିହାରର ପରିଚୟଟା ପଚାରି ନେବ । ସାହସ ତାର ହୁଏନି । ପ୍ରଥମ ସାକ୍ଷାତରେ ଏପରି ଗୁରୁତର ପ୍ରଶ୍ନ ପଚାରିବାକୁ ସେ ଲଜ୍ଜା ବୋଧ କରେ । ଠିକ ଏହି ମୁହୂର୍ତ୍ତରେ ନିହାର ଭାବେ ତାର ଅନ୍ତର କଥା ସେ ହୃଦୟ ଖୋଲି ପ୍ରତିମାକୁ କହିବ । ଏହିପରି କେତେପ୍ରକାର କଳ୍ପନାରେ ଭାସି ଯାଆନ୍ତି ଉଭୟ ବନ୍ଧୁ । ନିହାର ଭାବେ ଏ ଯେ ବାହ୍ୟ ମିଳନ । ପ୍ରକୃତ ସତ୍ୟ ତାର ଅନ୍ତଃମିଳନ ହୋଇଛି ତା ସହିତ ପ୍ରଥମ ସାକ୍ଷାତପରେ । ମନରକଥା ମନରେ ରହିଲା । ନିହାର ଶେଷରେ ଫେରିଲା ଘରକୁ ।

ବିଦାୟ ନେଇ ଆସିଲା ବେଳେ ମା କହିଲେ ନିହାର ମନରେ କିଛି ତୁମେ ଭାବିବ ନା । ଏତ ବାପ ଅଫର ଦରିଦ୍ର କୁଟୀର, ବାପ ମୋର ତୁମକୁ ଦେଖିଲେ ଭାରି ମୋର ଧୀରେନ୍ କଥା ମନେ ପଡ଼େ ।

କଥା ଶେଷ ନ ହେଉଣୁ ନିର୍ମଳା ଦେବୀଙ୍କ ଦୁଇ ଆଖିରୁ ଦୁଇ ଧାର ଲୁହ ଗଡ଼ି ପଡ଼ିଲା । ନିହାର କାରଣଟା କିଛି ବୁଝି ପାରିଲା ନାହିଁ । ପରେ ପ୍ରତିମାକୁ ଏ ବିଷୟ ପଚାରିବ ଭାବି ଫେରିଲା ଘରକୁ ।

ସେହି ଦିନ ଠାରୁ ପ୍ରତିମା ଘରକୁ ଆସିବା ଅଭ୍ୟାସଟା ନିହାରର ବଢ଼ି ଗଲା । ଅନେକ ଦିନ ଦୁହେଁ ଏକାଠି ବସି ପଢ଼ାପଢ଼ି କରନ୍ତି । ଦିନେ ଦିନେ ସନ୍ଧ୍ୟା ବେଳଟା କଟିଯାଏ ପ୍ରତିମା ଘରେ । ସବୁ ଆଠଟାବେଳେ ଫେରେ ନିହାର । କେଉଁ ଦିନ ପୁରୁଣା ମ୍ୟାଗାଜିନ୍ ଗଦାଏ କେଉଁଦିନ ବା ଗୋଟିଏ ଅଲ୍‌ଟବୁକ୍ ହାତରେ ଥାଏ । କେହି ତାକୁ ପ୍ରଶ୍ନ କରିବାକୁ ନ ଥାନ୍ତି । କ୍ଲବକୁ ଯିବା ତାର ଡେଲି ପ୍ରୋଗ୍ରାମ ଭିତରୁ ଗୋଟିଏ । ସେହି ଛଳନାରେ ସେ ଠକି ଦେଇଯାଏ ସମସ୍ତଙ୍କୁ ।

ଦିନୁଦିନ ନିହାର ଏବଂ ପ୍ରତିମାର ପ୍ରେମ ବଢ଼ି ଉଠିଲା । ଉଭୟେ ଉଭୟଙ୍କ ପରସ୍ପର ନିବିଡ଼ ବନ୍ଧନରେ ବନ୍ଧା ହୋଇଗଲେ । ପ୍ରତିମା ଏବେ ମୁହୂର୍ତ୍ତିକ ପାଇଁ ନିହାରକୁ ନ ଦେଖିଲେ ପାଗଳ ହୋଇଯାଏ, ନିହାର ପାଏ ପ୍ରତିମାଠାରେ ଆଶା ଓ ଆନନ୍ଦ । ଭାବେ ସତେ ଯେପରି ପ୍ରତିମା ଆଶା ଓ ଆନନ୍ଦର ଖଣି । ସେ ତାର ମରୁମୟ ଜୀବନର ସୁନ୍ଦର ଓଏସିସ୍ ସେଇଥିରେ ସେ ଖୁସି ତାକୁ ପାଏ ଭୋଇଲର କୂଜନ । ମାନସିକ କ୍ଲାନ୍ତି ଓ ଅବସାଦ ଉପସମ ଯାଏ କ୍ଷଣକ ପାଇଁ ।- - - - - -

କଟେ ନିର୍ମଳା ଦେବୀ ମଧ୍ୟ ନିହାରକୁ ଖୁବ୍ ଭଲ ପାଇଲେ ।।

ନିହାର ନିର୍ମଳା ଦେବୀଙ୍କର ସ୍ନେହର ପାତ୍ର ହେବାର ପଥେଷ୍ଟ କାରଣ
ଥିଲା । ଯେଉଁ ଦିନ ଦୁଇବନ୍ଧୁ ପାର୍କରେ ବସି କେତେ ଗପ ସପ
କଲେ ସେ ଦିନ ନିହାର ପ୍ରତିମାଠାରୁ କେତେ କଥା ଶୁଣିଛି ।
ପ୍ରତିମାକୁ ପାଞ୍ଚ ବର୍ଷ ହେବା ସମୟରେ ପିତା ତାର ଚାଲିଗଲେ
ସମସ୍ତ ପରିବାରକୁ ଶୋକ ସାଗରରେ ଭସାଇ ଦେଇ । ସେ କଥା
ତାର ସାମାନ୍ୟ ମନେ ଅଛି । ମାଙ୍କ ଠାରୁ ସେ ଏକଥା ଶୁଣିଥାଏ
।ଏ ତାପରେ ମହା ମାଘରେ ତାର ଅଦ୍ଭୁତର ରମା ଭାଇନା ଚାଲ
ବିଦାୟ ନେଇ ଚାଲିଗଲା । ରମାନାଥ ପ୍ରତିମାକୁ ଖୁବ୍ ଭଲ ପାଉଥିଲା
କଲେଜରୁ ଫେରିଲା ବେଳେ କେଉଁ ଦିନ ବିସ୍କୁଟ କି ଚକୋଲେଟ କେଉଁ
ଦିନ ଅବା ମିଠାଇଟାଏ ପକେଟରେ ଲୁଚାଇ ଆଣିଥାଏ । ସେ ଡାକାଡ଼ି
ଆସି ପାଖରେ ଲାଗିଲା ମାତ୍ରେ ପ୍ରତିମା ଦଉଡ଼ିଯାଏ ରମା ଭାଇଙ୍କୁ ।
ତାଇ ପକେଟ ଦେଖିନି ପଡ଼ାଏ । ରମାନାଥ ଅତି ଆନନ୍ଦରେ ପ୍ରତିମା
ଆଡ଼ିକୁ ବଢ଼ାଇ ଦିଏ ବିସ୍କୁଟ ଖଣ୍ଡିକ କେଉଁ ଦିନ ଅବା ମିଠାଇ ଜଲ୍
ଧରୁ ।

ନିହାର ଆନନ୍ଦରେ ପ୍ରତିମାର କଥା ଗୁଡ଼ିକ ଶୁଣି ନେଉଥାଏ ।
ସମୁଦାୟ ଘଟନାଟା ଶୁଣି ମନର ଗତି ତାର ବଦଳି ଗଲା । ଅତୀତର
କୌଣସି ଘଟନା ତାର—ମାନସ ପଟରେ ଖେଳି ବୁଲିଲା । ତେଣୁ
ସେ ଅନ୍ୟମନସ୍କ ହୋଇ ପଡ଼ୁଛି । ନିହାରକୁ ଅନ୍ୟ ମନସ୍କ ଦେଖି ପ୍ରତିମା
ତାର କଥାର ସୁଅ ବନ୍ଦ କରି ନେଲା । ତାପରେ ପୁଣି ଆରମ୍ଭ କଲା ।

ରମା ଭାଇନା ଚାଲିଗଲା ଦିନଠାରୁ ବାପୁଙ୍କ ଓ ମାଙ୍କ ଘରଟା
ଲାଗି ପଡ଼ୁଛି । ମାଙ୍କ ମନରେ ଆଦୌ ଶାନ୍ତି ନାହିଁ ଦୁନିଆରେ
ଭଲ କିଏ ଅଛି ତାଙ୍କର—ଯେଉଁ ଠାରେ ମା ବସିଛନ୍ତି—ସେହିଠାରେ
ଘଣ୍ଟା ଘଣ୍ଟା ଧରି ବସି ରହୁଛନ୍ତି । ଗାଧୋଇବା ଖାଇବା ଭୁଲି
ଯାଆନ୍ତି ପ୍ରତିମାହିଁ ତାଙ୍କର ଜୀବନର ଏକମାତ୍ର ସମ୍ବଳ । ତାଙ୍କୁ ଦେଖି

ସେ କେବଳ ଜୀବନ ଧାରଣ କରନ୍ତି ।

ନିହାର ଓ ରମାନାଥ ଉଭୟଙ୍କ ଚେହେରା ପ୍ରାୟ ସମାନ । ଦୁହେଁ ଏକ ବୟସର ଏଇଥି ପାଇଁ ନିହାରକୁ ଦେଖିଲେ ନିର୍ମଳା ଦେବୀ ବ୍ୟଥିତ ହୋଇ ପଡ଼ନ୍ତି । ତାଙ୍କର ମନରେ ଭାବନା ଆସେ ସତେ କିବା ରମା ତାଙ୍କର ଫେରି ଆସିଛି । - - - - -

ପ୍ରତିମା ନିହାରର ପରିଚୟ ପାଇଁ ବହୁତ ଚେଷ୍ଟା କରିଛି । କିନ୍ତୁ ପାଇନି ତାର ପରିଚୟ । ପ୍ରତିମା ବୁଝିପାରେନା ମଣିଷ ଜାତିଟା ତାଙ୍କ ପରି ଏତେ ସରଳ ନୁହନ୍ତି । ବହୁତ ଚେଷ୍ଟାପରେ ପ୍ରତିମା ଏତିକି ଜାଣି ପାରିଛି—

ଯେ ନିହାର ଦୟାଳ ବାବୁଙ୍କର ଖୁବ୍ ନିକଟ ସମ୍ପର୍କୀୟ । ପ୍ରତିମା Indirectly ତାର ପରିଚୟ ପଚାରିଛି । ନିହାର କିନ୍ତୁ ନାନା କଥା କହି ଭୁଲାଇ ଦିଏ ତାର ମନକୁ, ନିହାରର ପୂର୍ଣ୍ଣ ପରିଚୟ କେହି ପାଇନି । ସମସ୍ତେ ଜାଣନ୍ତି ସେ ଦୟାଳବାବୁଙ୍କର ଖୁବ୍ ଭିତରର ଲୋକ । ଜାଣିବାର ମଧ୍ୟ ଉପାୟ ନାହିଁ ।

ସେ ଦିନ ଗାଡ଼ିରେ ପ୍ରଥମ ସାକ୍ଷାତ ହୁଏ ନିହାରର ଦୟାଳ ବାବୁଙ୍କ ସାଙ୍ଗରେ । ବାଟରେ ଷ୍ଟେସନରେ ଗାଡ଼ି ଅଟକିଲା । ଥାର୍ଡ଼ କ୍ଲାସ କମ୍ପାର୍ଟମେଣ୍ଟରେ ବସି ବସି ନିହାରକୁ ଭାରି ବିରକ୍ତି ଲାଗିଯାଉ ଥିଲା । ମନଟା ଟିକିଏ ଫୁର୍ତ୍ତି କରିବା ପାଇଁ ପ୍ଲାଟଫର୍ମ ଆଡ଼କୁ ଗଲା । ସିଗାରେଟର ସୁଗନ୍ଧ ଧୂଆଁ ସହିତ ମନଟା ଟିକିଏ ହାଲୁକା ହୋଇ ଉଠିଲା । ଘଣ୍ଟି ବାଜିଲା । ଗାର୍ଡ଼ ସାହେବ ହୁଇସିଲ ମାରିଲା ପରେ ଗାଡ଼ି ଗଡ଼ିଲା ଅସ୍ତେ ଅସ୍ତେ ।

ନିହାର ସିଧା ଦଉଡ଼ିଲା ତାର କମ୍ପାର୍ଟମେଣ୍ଟ ଆଡ଼କୁ । ଗାଡ଼ିର ସ୍ପିଡ଼ ଟିକିଏ ବଢ଼ି ଯାଇଛି । ହଠାତ୍ ଆଖିରେ ପଡ଼ିଗଲା ଜଣେ ବୃଦ୍ଧ ଭଦ୍ରଲୋକଙ୍କ ଉପରେ ଫେଲଂ ଧରି ଫାଷ୍ଟକ୍ଲାସ କମ୍ପାର୍ଟମେଣ୍ଟ

ଉଠି ଯିବା ପାଇଁ ଉଦ୍ୟତ ହେଉଁ ହେଉଁ ତଳେ ଠିକ ଗଡ଼ିଯିବା ଉପରେ । ଡାକ୍ତର ଗୋଟିଏ ହାତରେ ଟେକି ଦେଇ ଭିତରକୁ ଠେଲି ପଶିଲା ନିହାର । ଦୟାଲ ବାବୁ ପଛକୁ ଅନାଇ ଦେଖନ୍ତି ଜଣେ ଯୁବକ । ପିଲାଟି ଯୁବକ ଦେହର ଶରୀରର ଅଙ୍ଗ ପ୍ରତ୍ୟଙ୍ଗରେ ଯୌବନ ତରଙ୍ଗ ଖେଳି ଯାଉଛି । ବୟସ ପଚିଶ ର ଏପାଖ । ଦେହେସ୍ୱରୁ ଜଣା ପଡୁଛି ଜଣେ କଲେଜ ଷ୍ଟୁଡେଣ୍ଟ ।

ନିହାରକୁ ଦେଖି ସେ ଅବାକ୍ ହୋଇ ପଡ଼ିଲେ । ସଂପୂର୍ଣ୍ଣ ଅପରିଚିତ ଅଲକ୍ଷିତ ଭାବରେ ପାଟିରୁ ତାଙ୍କର ବାହାରି ପଡ଼ିଲା Thank you ସେଇଠାରେ ହିଁ ତାଙ୍କର ନିହାର ସହିତ ପ୍ରଥମ ପରିଚୟ ।

ସେହି ଉପକାର ର ପ୍ରତ୍ୟୁପକାର ରୂପେ ଆଜି ନିହାର ପାଇଛି ଦୟାଲବାବୁଙ୍କ ଘରେ ଆଶ୍ରୟ । ହୋଇ ପାରନ୍ତି ସେ ତାଙ୍କର ଅତି ଆଦରର ଏବଂ ନିକଟତରଲୋକ । ଘରେ ପହଞ୍ଚିଲା କ୍ଷଣି ମିନତାଦେବୀ ତାଙ୍କର ଟୋକା ଠାରୁ ଘଟଣାଟି ଶୁଣି ନିହାରକୁ ଧନ୍ୟବାଦ ନ ଦେଇ ରହି ପାରିଲେ ନାହିଁ । ସେହି ଦିନଠୁ ନିହାର ଉଭୟଙ୍କର ସ୍ନେହର ପାତ୍ର ହୋଇ ପାରିଛି । ସେହି କାରଣରୁ ସେମାନେ ନିହାରକୁ ପୁଅ ରୂପେ ଗ୍ରହଣ କରି ନେଇଛନ୍ତି ।

ନିହାର ପ୍ରତିଦିନ ସ୍କୁଲକୁ ଯାଏ । କେବଳେ ପଡ଼ାପ୍ରତି ଅଭାବ'ର ପୂର୍ବ ଅଗ୍ରହ ନାହିଁ ଏକୁଟିଆ ବସି ଭବିଷ୍ୟତର ଛୋଟ ସୁଖସଂସାର ଗଢ଼ିବାରେ ସେ । କଳ୍ପନାର ତାର ଜନ୍ମ ଥିଲା ତଳ ରହେନା । ପ୍ରତିମା ଚାହିଁ କି ଯେ ତାକୁ ଅଦ୍ଭୁତ ଭଲପାଏ । ପ୍ରତିମାର ଜନ୍ମଦିନ ଉତ୍ସବରେ ତାଙ୍କୁ ସେହି ଫଟୋଟା ଉପହାର ଦେଇଛି ଭଲଦୁ... ଚାହିଁକି ସେ ସଂସାରକୁ ଦେଖେ ନିହାରମୟ ।

ସେ ଧନ ନିମନ୍ତ୍ରଣ ରକ୍ଷା କରି ନିହାର ଧାଇଁ ଯାଇଥିଲା ତାଙ୍କ ଘରକୁ । ଜନ୍ମଦିନ ଉତ୍ସବରେ ଯୋଗଦେବା ତାର ଆଗ୍ରହ ନୁହେ ବେଶୀ ଆଗ୍ରହ—ପ୍ରତିମାର ପ୍ରତିମୂର୍ତ୍ତି ନିଜ ହାତରେ ଆଙ୍କି ଜନ୍ମଦିନ ଭଳି ଶୁଭଦିନଥିରେ ତାକୁ ଉପହାର ଦେବ । ଏଇଥିରେ ତା'ର ବେଶୀ ଆନନ୍ଦ । ଚମଡ଼ା ବ୍ୟାଗ ଭିତରୁ ସୁନେଲି ଫ୍ରେମ ଫଟୋଟି ଯେତେ-ବେଳେ ପ୍ରତିମା ହାତକୁ ବଢ଼ାଇ ଦେଲା ମନ ତାର ପୁଲକିତ ହୋଇ ଉଠିଲା । ସାରା ଦେହରେ ତାର ବିଦ୍ୟୁତ୍ ପ୍ରବାହ ଖେଳିଗଲା ।

ପ୍ରତିମା ଆଶା କରି ନଥିଲା ଏ ଭଳି କମନୀୟ ଉପହାର ପାଇବ ବୋଲି । ଯେତେବେଳେ ଦେଖିଲା ତାର ନିଜର ଫଟୋ ଏବଂ ଆର୍ଟିଷ୍ଟ ନିଜେ ନିହାର ବାବୁ ହୃଦୟର ଆନନ୍ଦ ତାର ଦ୍ୱିଗୁଣିତ ହୋଇ ଉଠିଲା ।

ନିହାରକୁ ଏହା ବଦଳରେ ସେ ଦେବ କଅଣ ? କିଛି ଠିକ କରି ପାରିଲା ନାହିଁ ସେ ଧନଠୁ ନିହାର ପ୍ରତି ପ୍ରତିମାର ସ୍ନେହ ବଢ଼ିଗଲା । ନିହାରର ମଧୁର ନାମ ସ୍ମରଣରେ ସେ ପାଏ ସ୍ୱର୍ଗୀୟ ଆନନ୍ଦ ଓ ତୃପ୍ତି ଦୁନିଆକୁ ସେ ଭୁଲିଯାଏ ସେଥିରେ । - - - - - - - - -

କ୍ରମେ କ୍ରମେ ସେମାନଙ୍କର ପ୍ରେମ ବାହାରକୁ ଫୁଟି ଉଠିଲା । ତାହା ଯେ ଛପିବାର ନୁହେଁ, କୂଳ ଲଙ୍ଘି ସେମାନଙ୍କର ପ୍ରେମର ସୁଅ ଛୁଟିଲା । ନିହାର ଏବଂ ପ୍ରତିମା ଭାସି ଚାଲିଲେ ସେଥିରେ । ସେମାନଙ୍କର ଅବାଧ ମିଳନ ସମୁଦ୍ର କୂଳ, ପାର୍କ ଓ ସିନେମା ଘରେ ଦେଖି ଏ ସମସ୍ତ ଦୁନିଆ ଅଖିକୁ କାହିଁକି ବିସ୍ମୟ ଜଣା ପଡ଼ିଲା ।

ଏ ସମସ୍ତ ଦେଖି ସ୍କୁଲରେ ପିଲାମାନେ ଧନଦୂନ ଈର୍ଷାନ୍ୱିତ ହୋଇ ପଡ଼ିଲେ । ନିହାରର ଏ ସବୁକୁ ଖାତିର ନାହିଁ ଦୁନିଆ ତାର ଅଖିରେ କିଛି ନୁହେଁ । କେବଳ ଦୁନିଆ ସେ ଭାଙ୍ଗିବ । ପୁଣି ନିଜ ହାତରେ ନୂଆ ଦୁନିଆ ଗଢ଼ିବ । ପ୍ରତିମା ଯେ ଲକ୍ଷ୍ମୀଶୀଳା । ତାର ହସ

ସାହସ ନାହିଁ । ଦମ୍ଭ ନାହିଁ । ପିଲାଙ୍କ ଅଠା, ପରିହାସ ଓ ବିଦ୍ରୁପକୁ ସେ ପଥର ପରି ଦେହସହା କରି ପାରିଲା ନାହିଁ, ବାଧ୍ୟ ହୋଇ ତାକୁ ସ୍କୁଲ ଛାଡ଼ିବାକୁ ହେଲା ।

ସ୍କୁଲ ଛାଡ଼ିବା ପରେ ପ୍ରତିମାକୁ ମନେ ହେଲା ସତେ ଯେପରି ଦିନଗୁଡ଼ାକ ବଢ଼ି ଚାଲିଛି । ଘରଟାରେ ଖାଲି ବସି ବସି ତାକୁ ଖାଲି ବିରକ୍ତି ଲାଗିଲା, ମନଟା କାହିଁକି ଖରାପ ଲାଗିଲେ ପରିବର୍ତ୍ତନ ପାଇଁ ସିଏ ତେଣୁ କଅଣ ଗୋଟାଏ ଚିଜ ଅଙ୍କି ବସେ । ପ୍ରତିଦିନ ସକାଳେ ଓ ସନ୍ଧ୍ୟାବେଳେ ହାତବାକ୍ସରୁ ଫଟୋଟା ଆଣି ମନ ପୂରାଇ ଦେଖେ । ସେତିକିରେ ମନରେ ତାର ତୃପ୍ତି ଆସେନା । ସମସ୍ତ ସମୟରେ ଅଇନାଟା ଦେଖି ତା'ର ରୂପ ସହିତ ଫଟୋଟା ମିଳାଇ ନେଇଯାଏ ।

ଫଟୋଟାରେ ସୌନ୍ଦର୍ଯ୍ୟ ତାର ଅପୂର୍ବ ଫୁଟି ଉଠିଛି । ତାର କୁଞ୍ଚିତ କେଶ ଯୁକ୍ତ ଘନନୀଳ ବେଣୀ ଅଣ୍ଟା ପର୍ଯ୍ୟନ୍ତ ଖସି ଚାଲିଛି ବେଣୀରେ ପ୍ରତିଦିନ ଅଭ୍ୟାସ ଅନୁଯାୟୀ ଖୋସା ହୋଇ ଥିବା ଗୋଲାପ ଫୁଲଟା ମଧ୍ୟ ବାଦ ପଡ଼ିନାହିଁ । ଖୁବ୍ ନିରୀକ୍ଷଣ କରି ଫଟୋଟା ଆଡ଼କୁ ଅନାଏ । କିନ୍ତୁ କିଛି ଉଦ୍ଦେଶ୍ୟ ପାଏନା । ତାପରେ ମନେମନେ ଭାବେ ସାଧାରଣ ଆର୍ଟିଷ୍ଟ ପକ୍ଷରେ ଏହା ସମ୍ଭବପର ନୁହେଁ ବାସ୍ତବିକ ନିହାରବାବୁ କି ସୁନ୍ଦର ଆର୍ଟିଷ୍ଟ ।

ମନେହୁଏ ଏପରି ଜଣେ ଆର୍ଟିଷ୍ଟଙ୍କୁ ସେ ନିଜର କରି ନିଅନ୍ତା -ଯେ କି ଜୀବନର ପ୍ରତି ଛନ୍ଦେ ଛନ୍ଦେ ତାର ଫୁଟାଇପାରନ୍ତା ଆର୍ଟ । ଜୀବନଟା ସରସ ଓ ମଧୁମୟ ହୋଇ ଉଠନ୍ତା - - -

ପରମୁହୂର୍ତ୍ତରେ ଭାବନା ଆସେ ତାହା ସେତେ ସହଜସାଧ୍ୟ ନୁହେଁ । ମନଟା ତାର ଭାଙ୍ଗିଯାଏ କ୍ଲବକୁ ଯିବା ଛଳନାରେ ଗଣ୍ଡିଏ ପାଇ ଭାଇ ଖାଇଦେଇ ଚାଲିଯାଏ । ପ୍ରତିମା ଘରକୁ । ନାନା କୌତୁକ

ରେ ସମୟ କଟେ । ଘରକୁ ଫେରିବାକୁ ମନ ତାର ହୁଏନି । ପ୍ରତିମା ତାକୁ କେତେ ବାଧ୍ୟ କରେ ।

ନିହାର କହେ, ବାପା ଜାଣିଲେ ବିରକ୍ତ ହେବେ ମୁଁ ଆଉ ରହି ପାରିବିନି । ପ୍ରତିମା ଦରଦ କଣ୍ଠରେ ସମ୍ମତି ପ୍ରଦାନ କରେ 'ହଁ—ଅ' ବସାକୁ ଫେରି ନିହାର ବିଛଣାରେ ଗଡ଼ିରହେ । ଆଖିକୁ ତାର ନିଦ ଆସେନାହିଁ । ଅତୀତର କେତେ ଘଟନା ମନେ ପଡ଼ିଯାଏ । ମୁହୂର୍ତ୍ତକ ପାଇଁ ମନଟା ଦବିଯାଏ ।

ନିହାର ତାହାକୁ କିନ୍ତୁ ନ କହି ଦୁଇବର୍ଷ ହେଲା ଚାଲି ଆସିଛି ସହରୁ । ଘର ତା'ର କେଉଁ ସୁଦୂର ପଲ୍ଲୀରେ । ଆଇ ଏ ପରୀକ୍ଷା ଫଳ ଶୁଣିବା ପାଇଁ ସେ କଟକ ଆସିଥିଲା ତା ପରେ ଆଉ ଘରକୁ ଫେରିନି । ସାନ ଝିଅ ଟୁନିର କଥା ତା କାନରେ ବାଜେ କେତେ ଗେଲବସର ଝିଅଟା, କେଜାଣି ମନରେ ଅବା କଅଣ ଭାବୁ ନଥିବ । ସୁନାର ସଂସାରକୁ ଚୁନା କରି ଦେଇ ସେ ଆଜି ଚାଲି ଆସିଛି । ଭାଇ, ବନ୍ଧୁ, ବାପ, ମା, ପିଲା, କବିଲା ସମସ୍ତଙ୍କୁ ସେ ପାଶୋରିଦେଇଛି ।

ଏହିପରି ନାନାକଥା ଭାବି ନିହାର ନିଜକୁ ନିଜେ ବହୁତ ଧିକ୍କାର କରେ କିନ୍ତୁ ସେ ସବୁ କ୍ଷଣକ ପାଇଁ । ପରମୁହୂର୍ତ୍ତରେ ସେ ଭାବନା ଗୁଡ଼ିକ ତାର କୁଆଡ଼େ ଉଡ଼ିଯାଏ । ସେ ଭାବେ, ମୁଁ ଯେ ଶତଗୁଣ ସୁନାର ସଂସାର ସୃଷ୍ଟି କରିବ । ଭବିଷ୍ୟତର ସ୍ୱର୍ଣ୍ଣ ସ୍ୱପ୍ନ ଅତୀତକୁ କେଉଁ ଅତଳ ଗର୍ଭକୁ ଚାପି ଦିଏ । ନିହାର ପୁଣି ଚାଲେ ତାର ପ୍ରିୟତମା ପ୍ରତିମା ପାଖକୁ ।

ଦୟାଲ ବାବୁଙ୍କ କାନକୁ ଏସବୁ କଥା ଆସେ ନାହିଁ । ସେ ନିହାର ଉପରେ ସମସ୍ତ ଆଶା ବିଶ୍ୱାସ ଢାଳି ଦେଇଛନ୍ତି । ତା ଉପରେ ତାଙ୍କର ଅବିଶ୍ୱାସ ନାହିଁ । ନିହାରକୁ ସେ କେବେ ବିରକ୍ତ ହୁଅନ୍ତି ନାହିଁ, ତାକୁ ନିରାଶ କରିବା ଦୟାଲ ବାବୁଙ୍କ ଉଦ୍ଦେଶ୍ୟ ନୁହେଁ ।

ାଙ୍କର ବିଶ୍ୱାସ—ନିହାର ଯାହା କରେ ତାହା ଠିକ । ଦୟାଳ
ାବୁଙ୍କ ଏହି ସରଳ ବିଶ୍ୱାସରେ ନିହାର ନେଉଛି ଖୁବ୍ ସୁଯୋଗ ।

ପୂର୍ଣ୍ଣିମା ରାତ । ଚନ୍ଦ୍ର କିରଣ ଶୁଭ୍ରଅଙ୍ଗେ ଉଜ୍ଜ୍ୱଳ ହୋଇ
ଛି ଚନ୍ଦ୍ରର ଶୁଭ୍ରକିରଣ ସମୁଦ୍ର ଉପରେ ପଡ଼ି ଜଳରାଶିକୁ
ଗୁଞ୍ଜିତ କରୁଛି । ଚନ୍ଦ୍ରକିରଣର କୁହୁକ ପରଶରେ ସତେ ଯେପରି
ବୁଦ୍ଧ ପଦ ଗୁଳ୍ମକ ଧଳା ହୋଇ ଉଠିଛନ୍ତି । ଝଙ୍କାଳିଆ ଗଛତଳେ
ଛୋଟ ଛୋଟ ବୁଦାସବୁ ଚନ୍ଦ୍ର ସହିତ ଆରମ୍ଭକରି ଦେଇଛନ୍ତି ସେମାନଙ୍କ
ଚକାଳି ଖେଳ । ଚନ୍ଦ୍ର ମଧ୍ୟ ବେଳେ ବେଳେ ମେଘ ଦେହରେ ଲୁଚି
ଇ ସେମାନଙ୍କୁ ହଇରାଣ କରି ଦେଉଛନ୍ତି ।

ଏତିକ ବେଳେ ଗୋଟିଏ ଘୋଡ଼ାଗାଡ଼ି ଛୁଟିଛି ସମୁଦ୍ର କୂଳେ
ଳେ । ଅଳ୍ପ ସମୟ ପରେ ଗାଡ଼ି ଅଟକିଲା । ନିହାର ଓ ପ୍ରତିମା
ହ୍ଲାଇପଡ଼ି ଚାଲିଲେ ବାଲି ଉପରୁ । ବାଲିଉପରେ ଶୁଭ୍ର ଗାଲିଚା
ଛି ହୋଇଛି । ଚନ୍ଦ୍ର ଆକାଶରେ ଟାଣି ଦେଇଛି ଠିକ ନୀଳ ଚାନ୍ଦୁଆ
ସଂଖ୍ୟ ଇଲେକ୍ଟ୍ରିକ ବାଲ୍ବ ସେଥିରେ ଝୁଲି ପଡ଼ିଛନ୍ତି ତାରକା
ପରେ ।

ଚନ୍ଦ୍ରର ଏତ ଲୁଣ ସହାନୁଭୂତି କାହା ପ୍ରତି ନ ଥାଏ ।
ହାର ଓ ପ୍ରତିମା ଉଭୟେ ଅଛିଷ୍ଣୁ । ତେଣୁ ସେମାନଙ୍କ ମନ
ପିକ ସଙ୍ଗୀଟିଏ ଅଙ୍କ ସେ କରିଦେଇଛି । ଦୁହେଁ ସିମେଣ୍ଟ ବେଞ୍ଚ
ପରେ ବସି ନାନା ସୁଖ ଦୁଃଖ ହେଲେ । ସେମାନଙ୍କ କଥାବାର୍ତ୍ତାର
ଛି ଗୋଟାଏ ସୀମା ନ ଥାଏ ।

ପ୍ରତିମା ଭାବିଲା ଏହା ହେଉଛି ଉପଯୁକ୍ତ ସମୟ । ଅନ୍ତରର ଖୋଲି
ା ପଦକ ତାର ସେହି ମୁହୂର୍ତ୍ତରେ କସ ଶୁଣାଇବ ନିହାରକୁ ।
ମନରେ ଅପେ କାଳେ ନିହାର ବିରକ୍ତ ହୋଇ ପାରେ ।

ନିହାରର ମନରେ ଅଯଥା ବିରକ୍ତି ଆଣିବା ତା ପକ୍ଷରେ ଅଭଦ୍ରତା ଛଡ଼ା ଆଉ କିଛି ନୁହେଁ । ପ୍ରଥମେ କଥାବାର୍ତ୍ତା ଆରମ୍ଭ କରିଦେବା ମଧ୍ୟ ତା ପକ୍ଷେ ଶୋଭନୀୟ ନୁହେଁ, କିନ୍ତୁ ନ କହି ଚୁପ୍ ରହିଲା । କିଛି ସମୟ ପରେ ମନଟାକୁ ଟିକିଏ ସଂଯତ କରି ନେଇ ଆରମ୍ଭ କଲା, ନିହାର ଭାଇନା ଏତେ ଦିନ ପରେ ତୁମକୁ ମୁଁ ମୋର ଅନ୍ତରର କଥା ପଦକ କହିବି ।

ପୁଣି କ୍ଷୀଣ କଣ୍ଠରେ ଭାସି ଆସିଲା ପ୍ରତିମା କଣ୍ଠରୁ ତୁମକୁ ମୋର ଏଇ ବିଶେଷ ଅନୁରୋଧ । ଅଭାଗିନୀର ଅନୁରୋଧ କେତେ ଦୂର ରକ୍ଷାହେବ କେଜାଣେ ? ଏକଥା ଶୁଣି ନିହାର ହଠାତ୍ କହି ପକାଇଲା—

ପ୍ରତିମା ଏଇଥିପାଇଁ ତୁମକୁ ମୋତେ ବିରକ୍ତି ଲାଗେ । ତୁମେ ଜାଣନା ତୁମକୁ ମୁଁ କେତେ ଭଲପାଏ ।

ତଥାପି ତୁମର ଅନ୍ତରର କଥାପଦକ ମୋତେ ପୁଣି କହିବାକୁ ତୁମର ଏତେ ଲାଜ ଏତେ ସଂକୋଚ ?

ଏହାହିଁ ଉଜ୍ୱଳ ଦୃଷ୍ଟାନ୍ତ ପ୍ରତିମା—ତୁମେ ମୋତେ କେତେ ଭଲ ପାଅ । କଥା ଗୁଡ଼ିକ ଯେପରି ପ୍ରତିମାକୁ ଭାରି ବାଧିଲା । ଶୁଭ୍ର ଚନ୍ଦ୍ର କିରଣରେ ଦୁଇଧାର ଲୁହ ଗଡ଼ି ପଡ଼ିଲା ପ୍ରତିମାର ଶୁଭ୍ର ଗଣ୍ଡ ଦେଶରେ ।

ନିହାର କହିଲା —ଛି ପ୍ରତିମା ତୁମେ ଯେ କାନ୍ଦୁଛ

ସିଲ୍କ ରୁମାଲଟା ବାହାର କରି ନିହାର ପ୍ରତିମାର ମୁହଁ ଆଖିକୁ ହାତ ବଢ଼ାଇ ଦେଇଛି । ଠିକ୍ ଏତିକି ବେଳେ ଚନ୍ଦ୍ର ଢଳି ପଡ଼ିଛି ବାଦଲ ଦେହରେ । ପ୍ରତିମା ପାଟିରୁ ମଧ୍ୟ ଠିକ୍ ଏତିକି ବେଳେ ବାହାରି ପଡ଼ିଲା ଉ—ହୁଁ···ଚନ୍ଦ୍ର ପୁଣି ଆକାଶରେ ଫୁଟିଉଠିଲା ପୁନର୍ବାର ଦୁଇଧାର ଲୁହ ଗଡ଼ି ଆସିଲା ପ୍ରତିମାର ଦୁଇ ଆଖିରୁ କୋହ ସମ୍ଭାଳି ନପାରି ସେ କଇଁ କଇଁ ହୋଇ କାନ୍ଦି ଉଠିଲା ।

ନିହାର ତାଙ୍କୁ ଟାଣି ଆଣିଲା ନିଜ ଗାଡ଼ି ଉପରକୁ । ମନେ ମନେ ଭାବିଲା ସେ ପ୍ରତିମା ମନରେ ବୃଥା ଭ୍ରମ ଉପୁଜିବ ଭାବିଲା ପୁଣି ପ୍ରତିମା ପାଖରୁ ଦୂର ଯାଗିନେବ ଭାବେନି ସେ ମନରେ ଅନ୍ୟ କିଛି ଭାବି ପାରେ ଏହି ଭୟରେ ନିହାର ନୀରବ ରହିଲା ।

ପର ମୁହୂର୍ତ୍ତରେ ହାତଘଣ୍ଟାକୁ ଅନାଇ ନିହାର ଦେଖେତ ସମୟ ଦଶଟା ଉପରେ । ନିହାର ଓ ପ୍ରତିମା ଦୁହେଁ ପୁଣି ବସି ଗଲେ ଘୋଡ଼ା ଗାଡ଼ିରେ । ଘୋଡ଼ାଗାଡ଼ି ପହଞ୍ଚିଲା ଯାଇ ପ୍ରତିମା ଦୁଆରେ ।

ଗୁଡ଼ନାଇଟ୍ କହି ନିହାର ଗାଡ଼ି ଉପରକୁ ଉଠିଛି କି ନାହିଁ ପ୍ରତିମା ପଛରୁ ଆପତ୍ତି କରି ଉଠିଲା ।

କହିଲା--ଆଜି ରାତିଟା ଆପଣ ଆମଘରେ ଅତିଥି ହୋବାକୁ ପଡ଼ିବ । ବଡ଼ିଭୋରରୁ ଉଠିଲେ ଘୋଡ଼ାଗାଡ଼ି ଆପଣଙ୍କ ଘରେ ନେଇ ଛାଡ଼ି ଆସିବ । ନିହାର କିନ୍ତୁ ତାର ଅନୁରୋଧ ରକ୍ଷି ପାରିଲା ନାହିଁ । କଅଣ ଅପଦ ଭଂସନାରେ କହି ଦେଇ ଗାଡ଼ି ଉପରକୁ ଉଠିଲା ।

ନିହାର ଚାଲି ଗଲାପରେ ଏତେ ବେଳେ ଯାଏ ପ୍ରତିମା ପାଖରେ ରହିଗଲା । କିନ୍ତୁ ଗାଡ଼ିରେ ବସିବା ପରେ ନାନା ଭାବନା ଆସି ତାକୁ ବିଚଳିତ କରି ପକାଇଲା । ଅସଲ୍ କଥା ବାପା ଯେ ତାକୁ ଖୋଜିବେ । ଏତେ ରାତି ହେଲାଣି । ଏ ସମସ୍ତ କଥା ଭାଙ୍ଗି ସେ ଗଢ଼ିବସିଲା ଏକ ପ୍ଲାନ୍ ଦୟାଳ ବାବୁଙ୍କ ଠକିବା ପାଇଁ । ତାପରେ ଗାଡ଼ି ଛୁଟିଲା ।

ନିହାରର ଆଖି ଆଗରେ ସେ ଦିନର ମଧୁର ଛବି ନାଚି ଉଠିଲା ତାର ପାଇଁ ପ୍ରତିମା କେତେ କାନ୍ଦିଲା । ସତେ କଅଣ ସେ ତାକୁ ଏତେ ଭଲ ପାଏ ?

ନିହାର ନିଜକୁ ନିଜେ ପ୍ରଶ୍ନ କଲା ।

ପ୍ରତିମାର ଅଶ୍ରୁ କଣାରେ ସେ ଦିନ ନିହାରର ପ୍ରେମର

ଅଞ୍ଚଳଟା ଧୋଇ ହୋଇ ଯାଇଥିଲା । ପୁନା ଭଣ୍ଡିଆ ନିଅଁରେ ପ
ଉଜ୍ଜ୍ୱଳ ହୋଇ ଉଠିଲା ପରି ପ୍ରତ୍ୟକ୍ଷ ଅଶ୍ରୁଧାରାରେ ଉଦ୍ଭ
ଅନୁସ୍ୱର ଓ ବନ୍ଧନ ଦେଖାସ୍ପଷ୍ଟ ହୋଇ ଉଠିଲା ।

ନିହାର ଯାଇ ଦୁଆର ପାଖରେ ପହଞ୍ଚିଗଲା । ଭିତର ପାଖ
ଦୁଆର ବନ୍ଦ ହୋଇଛି । ରହସ୍ୟଟା ସେ କିଛି ବୁଝିପାରିଲା ନାହିଁ
ବଡ଼ ପାଟିରେ ଡାକିଲା ନବୀନାଙ୍କୁ । ଏତେ ସବେରେ ଗୃହର ଚୌକା
ଆଉ ହୋସ୍ ନାହିଁ । ସୋମେଶ୍ୱର ବାବୁ ନିହାରର ପାଟି ଶୁଣି ଚମ
ପଡ଼ିଲେ ।

ତାଙ୍କ ମୁହଁରୁ ବାହାରି ପଡ଼ିଲା, ଆରେ ଏ ଯେ ନିହାର
ଏତେବେଳଯାଏ କେଉଁଠି ଥିଲ ?
ଗୃହର ଯାଇ ଖବର ଦେଲା—

ବାବୁ ଆଜି ମଣ୍ଟୁ କୁମାର ବାର୍ଷିକ ଉତ୍ସବ । ସେଥି ଯୋଗୁ ଏତେ
ଡେରି । ସୋମେଶ୍ୱର କଥାଟା ବୁଝି ପାରିଲେ । ନିହାରର ସ୍ଲାନ୍ତିଟା ବାବୁଙ୍କ
ମନକୁ ବେଶ୍ ପାଇଲା । ସେଇ କଥାରେ ସେ ପାଲି ଦେଇ ଗ
ଦୟାଳଜୀଙ୍କୁ ।

\+ + + +

ଏହି ସୁଦୂର ବିଦେଶରେ ଉଜ୍ଜ୍ୱଳଙ୍କ ନିହାରର ଏକମାତ୍ର
ଓଡ଼ିଆ ବନ୍ଧୁ । ହର୍ଣ୍ଣବି ରୋଡ଼ରେ ଖଣ୍ଡିଏ ଉଡ଼ାଘର ନେଇ ସେ
ରହୁଥାନ୍ତି । ସାଙ୍ଗରେ ପିଲା କବିଲା ଓ ସାନ ଭାଇ ସଜନ । ଦୁଇ
ଭାଇ କାମ କରନ୍ତି ଗୋଟିଏ କାରଖାନାରେ । ନିହାର ଉଜ୍ଜ୍ୱଳର ବାଲ
ଖେଳର ସାଥୀ । ମାଟ୍ରିକ ପରୀକ୍ଷାରେ ପାସ କରିବା ପରେ ବେକାର
ସମସ୍ୟା ସମାଧାନପାଇଁ ସେ ବମ୍ବେକୁ ଗୁଲିଆସିଲା । ସୁଯୋଗ ଦେଖି
ଦୁଇଭାଇ ପଶିଯାଇଛନ୍ତି ଗୋଟିଏ ବ୍ୟବସାୟରେ । ପ୍ରତିଷ୍ଠାରେ

ବୋଲି ନିହାର ଅନେକ ସମୟରେ ରଜତ ପାଖକୁ ଯାଏ । ରଜତକୁ 'ସେ ବଡ଼ ଭାଇନା' ଡାକେ ।

ଦୀର୍ଘ ସାତଦିନର ପରିଶ୍ରମପରେ ରବିବାର ର ବଡ଼ ଅବସରଟା ମିଳିଛି । ବାଟଘରେ ଆରାମ ଚେୟାରରେ ବସି ରଜତ ଇଂରାଜୀ ଗୋଟିଏ ମ୍ୟାଗାଜିନ୍ ପଢି ବାରେ ଲାଗିଛି । ନିହାର ପହଞ୍ଚି ଗଲା ସେଠାରେ । ବହୁଦିନପରେ ନିହାରର ଅକସ୍ମାତ ଆବିର୍ଭାବ ଦେଖି ରଜତ ଆଶ୍ଚର୍ଯ୍ୟ ହୋଇ ପଡ଼ିଲା । ଭାବିଲା ନିହାର କିଛି ଜରୁରୀ କାମ ନେଇ ଏତେ ସକାଳଟାରେ ପହଞ୍ଚି ଯାଇଛି । ଚା ଜଳଖିଆ ଶେଷ ହେଲା ପରେ ସିନେମା ଥିଏଟର ବାଦ୍ୟ ଗୀତ ପାଠପଢା ଗୋଟିକ ପରେ ଗୋଟିଏ କେତେ କଥା ପଡିଗଲା । ଆର୍ଟ ଦିଗରେ ନିହାରର ପ୍ରୋଗ୍ରେସ ଟାକୁ ରଜତ ଭାରି ପ୍ରଶଂସା କଲା ।

ଯା'ଭିତରେ ନିହାରର ଆର୍ଟ ମ୍ୟାଗାଜିନ୍ ମାନଙ୍କରେ ଯଥାମତ ବାହାରେ । ବିଭିନ୍ନ ବ୍ୟକ୍ତି ବିଶେଷଙ୍କ ଠାରୁ ଏବଂ ବଡ଼ବଡ଼ ଅନୁଷ୍ଠାନ ମାନଙ୍କରୁ କେତେପ୍ରକାର ସାମ୍ପଲ୍ ଓ ଡିଜାଇନ, ପାଇଁ ତା' ପାଖକୁ ପ୍ରତିଦିନ ଅର୍ଡର ଆସେ । ନିହାରର ଏ ସମସ୍ତ ଗୁଣ ବର୍ଣ୍ଣନା କରି ରଜତ ତାକୁ ଏକ ମସ୍ତବଡ଼ ଆର୍ଟିଷ୍ଟ ହିସାବରେ ଥୋଇଦେଲା । ରଜତଙ୍କ କଥାକୁ ନିହାର ମନଦେଇ ଶୁଣୁଥାଏ ।

କିନ୍ତୁ ଏ ଆତ୍ମ ପ୍ରଶଂସା ତାକୁ ଭଲ ଲାଗୁ ନ ଥାଏ । ସେ ସବୁ ଅନେକ ଲୋକଙ୍କ ଠାରୁ ଶୁଣି ଶୁଣି ତାକୁ ବିରକ୍ତି ଲାଗି ଗଲାଣି । ନିହାର ଆଜି ନିଜ ଆତ୍ମ ପ୍ରଶଂସା ଶୁଣିବା ପାଇଁ ରଜତ ପାଖକୁ ଆସିନାହିଁ । ସେ ଆସିଛି—ଆଜି ହୃଦୟ ଖୋଲି ବନ୍ଧୁଙ୍କ ଆଗରେ ନିଜର ମନର କଥା କହିବ । ସେ ତା' ପ୍ରତିମା ବାନ୍ଧବୀକୁ ବିବାହ କରିବାକୁ ଇଚ୍ଛାକରେ । ଏଥିରେ ସେ ଚାହେଁ—ରଜତର ମତ ।

ରକ୍ତବର୍ଣ୍ଣ ହୋଇ ଆସୁଥିଲା । ଏବେ ଡାକ୍ତରଖାନାର ମୀମାଂସା କରିବ ସେ ଏବେ ଚଞ୍ଚଳ କରିଦେବ । ପରେ ଦେଖିଲା ପ୍ରତିମା ଅପ୍-ଟୁ-ଡେଟ୍ ଗାର୍ଲ । ମାନ ମଧ୍ୟ ସେଥିରେ ସମ୍ପନ୍ନ ଅଛି ।

ଏ ସମସ୍ତ ବିଷୟର କଥା ରଞ୍ଜନ ତାର ବିଚାରରେ ନିଜର ମତ ଦେଲା । ସେ ନିଜକୁ ଏଥର ଦେଖା ହିଁ ପ୍ରକୃତରେ ତୁମ୍ଭ ଜୀବନର ଏକମାତ୍ର ସାଥୀ ହୋଇ ପାରିବେ । ନିଜର ବାପୁଙ୍କ ପରିଅଣ୍ଟିସ୍ମ ଧାରର ଉପଯୁକ୍ତ ତୁଳନା ହୋଇ ପାରିବେ ସେ । କିନ୍ତୁ ରଞ୍ଜନ ବାବୁଙ୍କ ଭିତର ରହସ୍ୟ ଜଣାନାହିଁ । ତାଙ୍କୁ ମାଲୁମ ନାହିଁ ନିଜର ସେତେବେଳେ ବିଶ୍ୱାସ ଘାତକ । ମୂର୍ଖତାର ସଂସ୍କାରକୁ ପୂଜା କରି ସେ ଗୃହିଣୀଙ୍କୁ ଅନଳରେ ପତଙ୍ଗ ସମ ଝାସ ଦେବ ।

ପତଙ୍ଗ ବୃତ୍ତି ମାତ୍ରେ ନା ଅନଳର ତେଜ । ସ୍ୱଭାବେ—ତାହା ଏତ ପ୍ରଧାନ ଜ୍ୱଳନ୍ତ ଜଳୁଥିଲା ପଦାର୍ଥ । ଅତି ଜଡ଼ ବେଗରେ ଡେଇଁ ପଡ଼େ ତା ଭିତରକୁ । ଦେଖିବୁ ସଙ୍ଗ ଆଉ ପାଇପାରେ ନା । କ୍ଷୁଦ୍ର କୀଟ—ତାର ଅବା ବୁଦ୍ଧି କାହିଁ ବା ବିବେକ କାହିଁ ? ଭବିଷ୍ୟତ ବିପଦ ଓ ଦୁର୍ଗତି ବିଷୟ ଚିନ୍ତା କରିବା ତାର ଶକ୍ତିର ବହିର୍ଭୂତ ।

ନିଜର ମଧ୍ୟ ସେହିପରି ଭାବୁଛି ଅନଳରେ ଝାସ ଦେବ । ରଞ୍ଜନ ତାଙ୍କୁ ସମର୍ଥନ କରି ଅନଳରେ ଆହୁତି ଢାଳି ଦେଉଛି ପତ୍ନୀ ଓ ଭବିଷ୍ୟତର ପ୍ରଶ୍ନ ଆଉ ଉଠୁନାହିଁ

ତାପରେ ନିଜର ଠିକ କରି ନେଲା—ନିଶ୍ଚୟ ପ୍ରତିମାକୁ ସେ ଜୀବନସଙ୍ଗିନୀ କରି ନେବ । ଏଥିରେ ପ୍ରତିମାର କିଛି ଆପତ୍ତି ନାହିଁ କିନ୍ତୁ ବାପାଙ୍କ କଥା, ସେ ଏଥିରେ ରାଜି ହୋଇ ନ ପାରନ୍ତି । ସେ ବିଷୟ ନେଇ ପ୍ରଶ୍ନ ଉଠାଇବା ମଧ୍ୟ ତା ପକ୍ଷରେ ଅସୁନ୍ଦର କଥା ଏଣୁ ତେଣୁ ନାନା କଥା ଭାବି ଶେଷରେ ସେ ପ୍ରତିମା ପାଖକୁ ଲେଖି

ମିଳା ତର ଶେଷ ଚିଠି । ଦୀର୍ଘ କେତେଦିନର ଦରଦଅସ୍ତ
ହୃଦୟର ବ୍ୟଥାର କାହାଣୀ ସେ ଗୋଲାପଦଳ ତାର ଚିଠିରେ ।
ଅଶ —ପ୍ରତିମା ତାର ମନୁଷ୍ୟ ଜୀବନରେ ଶାନ୍ତିର ବାରି ସିଞ୍ଚନ କରି
ଥିବ । ସେଥିପାଇଁ ଅଶାରେ ହୃଦୟ ତାର ପୁଲକିତ ହୋଇଉଠିଛି ।

ଦୟାଲବଲଙ୍ଗ ନମ୍ବର ୨

ସ୍ନେହର ପ୍ରତିମା,

ବାନ୍ଧିବ ଆଜ ଚିଠିଟା ଲେଖିଲା ବେଳକୁ ହାତ ଥରି ଉଠୁଛି
କଲମ ମୁନ ଅଟକି ଯାଉଛି । ଭାବି ପାରୁନି କେତେ ଦୂର ତୁମେ ମୋ
କଥାରେ ସ୍ୱୀକାର ହେବ । ସେ ଦିନ ସମୁଦ୍ର କୂଳରେ ତୁମ ମନରେ
ମୁଁ କେତେ କଷ୍ଟ ନ ଦେଇଛି ।

ପ୍ରତିମା! ତୁମେ ମୋତେ ତୁମର ଅନ୍ତର ଖୋଲି କଥା ପଦକ
କହିବା ଆଗରୁ ମୁଁ ତୁମକୁ ମୋର ଅନ୍ତରକଥାଟି ଆଜି କହୁଛି । ସେ
ଦିନ ତୁମ ମନରେ କଷ୍ଟ ଦେଇଥିବା ଭାବି ସେଥିପାଇଁ ତୁମକୁ ଘୃଣା
ଉପରକୁ ଟାଣି ଆଣିଥିଲି । ତୁମର ଅଶ୍ରୁ ବିନ୍ଦୁ ଯେତେବେଳେ ଲକ୍ଷି
କରୁଥିଲି ତୁମର ବକ୍ଷ ଉପରେ - - - -

ସେ ଅଶ୍ରୁ ଲହରର ନୂଆ ପ୍ରତିମା ! ଅନ୍ତରରେ ଶେଭଦନ
ଦାହା ଲାଗିଉଛି । ଯେତେବେଳେ ତୁମର ଦେହରେ ତୁମର ଲୁହ
ପାଣି ଦେବାକୁ ମୁଁ ଉଦ୍ୟତ ହେଲି ସେତେବେଳେ ହାତ ଧରିପକାଇ
ପାରେ ତୁମେ ସେଥିରୁ ବାରଣ କରିଥିଲ । ସେହି କ୍ଷଣିକ ପରଶତୋଷ
ଅନ୍ତରରେ ବର୍ତ୍ତମାନ ଫୁଟିବା ଲାଗିରହିଛି । ମନେ ପଡ଼ିଲେ ଆଜି
ଦେହ ଶିହରି ଉଠୁଛି ।

କଥାଟା ବୋଧହୁଏ ବୁଝିପାରୁଥିବ ପ୍ରତିମା ! ମୋର ପୂର୍ଣ୍ଣ
ବିଶ୍ୱାସ ଏଥିରେ ତୁମେ ନ ରାଜି ହେବ ନାହିଁ । ମା ଙ୍କର ବି କିଛି
ଆପତ୍ତି ନାହିଁ ।

ନିହାର ଏହାକୁ ଅଙ୍କିଲେ । ପ୍ରଥମା ପ୍ରତିଟି ପଢ଼ିଲେ । ମନେ ମନେ ଭାବିଲେ ଏ କେଉଁ ଅଜ୍ଞାତ ଶିଳ୍ପୀଙ୍କର ଅପୂର୍ବ ପ୍ରକାଶ ! ତଥାପି ପ୍ରଥମେ ନିହାର ବାବୁଙ୍କ ଜୀବନର ସବୁ ପ୍ରତିଫଳିତ ହୋଇ ଥିବାରୁ ସେ ଅନୁଭବ କରିପାରିଲେ । ସଙ୍ଗେ ସଙ୍ଗେ ଚିଠି ଲେଖା ଆରମ୍ଭ ହେଲା ।

ପ୍ରମୋଦ କୁଟୀର

ପ୍ରିୟ ନିହାର ବାବୁ,

ଚିଠି ଲେଖିବାର ଅଉ ଦରକାର ପଡ଼ୁନି । ଦୁନିଆରେ ମୁଁ ଆପଣଙ୍କୁ କେଉଁ ଦେଇପାରେ ? ମୋ ଠାରେ ଆପଣଙ୍କର ତାଙ୍କ ଅନୁରୋଧ । ମୁଁ ଯେ ସବୁ ବେଳେ ଆପଣଙ୍କ ଅନୁଗତା । ଆପଣଙ୍କ ସାହସରେ ମୁଁ ସାହସ କରି ବସିଲି ପୁନାର ଗୀତ ରଚନା କରିବାକୁ । ପୁନାର ଆଘାତ ତଳେ ଆତ୍ମ ଗଢ଼ି ଦେବା ଆମର ଭବିଷ୍ୟତର ସୁନେଲି ସଂସାର । ପ୍ରେମର କାଞ୍ଚନ ମରପଥର ଗୁଡ଼ିଆରେ ଫୁଟି ଉଠିବ ମୁକ୍ତା । ସେ ଗୁଡ଼ିକ କେବଳ ଉପଭୋଗ କରିବା ଆମେ ଦୁହେଁ । ମାଆଙ୍କୁ ମୁଁ କହିନଥିଲି କହିଛି । ତାଙ୍କର କଥାରୁ ମୁଁ ଜାଣିପାରିଲି ଏ ବିଷୟରେ କଣ ସମ୍ମତି କି ନା ।

ଆପଣଙ୍କୁ ପାଇଲେ ତାଙ୍କ ଜୀବନର ଏକ ବିଶେଷ ଅବସୋସ ଦୂର ହୋଇଯିବ । ଅଉ ଅଧିକ ଲେଖିବା ଅନାବଶ୍ୟକ । ଇତି ।

- - - - -

ଆପଣଙ୍କର

ଚରଣ ସେବିକା

ନିହାର ଚିଠିଟା ଫେରାଇ ପଢ଼ିଲେ । ଚିଠି ସଙ୍ଗରେ ଗଣ୍ଠି ଏ କାଗଜରେ ପ୍ରଥମା ଦେଇଛି ନିହାରଙ୍କ ଅଙ୍କିତ ଛବିର ପ୍ରତ୍ୟୁତ୍ତର । ନିହାର ଚିଠିରୁ ସେ ତାର ମନସ୍ତତ୍ତ୍ୱର ପରିଚୟ ପାଇ ପାରିଥିଲେ । ନିଜେ ସେ ଯେ ଶିଳ୍ପୀ । ଶିଳ୍ପୀ କେବଳ ଶିଳ୍ପଶୁଭ୍ରତା ଓ କଳାକୌଶଳକୁ

ପ୍ରକୃତରେ ବୃଦ୍ଧି ପାଉଥାଏ । ସେ ସାଧାରଣ ଦର୍ଶକଙ୍କ ଭଳି କଳାର ନଗ୍ନସୌନ୍ଦର୍ଯ୍ୟରେ ଭ୍ରାନ୍ତ ହୋଇ ପଡ଼ି ନଥାଏ । ତାର ସୂକ୍ଷ୍ମ ଦୃଷ୍ଟି କଳାର ଗଭୀରେ ଗଭୀରେ ପ୍ରବେଶ କରିଥାଏ ।

ସେଥିପାଇଁ ପ୍ରତିମା ମଧ୍ୟ ନିହାର ପାଣିକୁ ଦେଇ ପାରିଛି ଆଜି ଏହି ଉପଯୁକ୍ତ ଉତ୍ତର । ନିହାର ଛବିଟି ଦେଖି ବୁଝି ପାରିଲା ପ୍ରତିମାର ଅନ୍ତରର କଥା । ଚିଠିଟି ପଢ଼ି ନ ହସି ସେ ରହିପାରିଲା ନାହିଁ ।

ପ୍ରଥମ: ଅଜା ନିହାରକୁ ଦେବତା ଆସନରେ ଆସୀନ କରି ନେଇଛନ୍ତି । ପ୍ରେମ ମନ୍ଦିରରେ ଆରାଧ୍ୟ ଦେବତା ରୂପେ ବସିଛନ୍ତି ଜଣେ ଦିବ୍ୟଜ୍ୟୋତି ମହାପୁରୁଷ । ଧୂପ, ଦୀପ, ଓ ପୁଷ୍ପ ସମ୍ଭାରରେ ମନ୍ଦିର ପୂର୍ଣ୍ଣ ହୋଇଛି । ଦେବତାଙ୍କ ପାଖରେ ବସିଛନ୍ତି ପ୍ରେମ ଜର୍ଜରିତା ଜଣେ ସଲଜ୍ଜା ତରୁଣୀ । ସଭକ୍ତି ଚିତ୍ତରେ ସେ ଟେକି ଦେଇଛନ୍ତି ଅର୍ଘ୍ୟ । ଦେବତା ସହାସ ବଦନରେ ତୋଳି ନେଇଛନ୍ତି ତାହା !

କିନ୍ତୁ ଅପର ଚିତ୍ରଟିରେ ଘଟିଛି ଏହାର ବିପର୍ଯ୍ୟୟ । ମନ୍ଦିରଦ୍ୱାର ଉନ୍ମୁକ୍ତ । ଦେବତାଙ୍କର ଚିତ୍ତବିଭ୍ରମ ଘଟିଛି । ମାତ୍ର ଭକ୍ତ ବତ୍ସଳା ଅଟଳ ଓ ଅଚଳ ଅବସ୍ଥାରେ ଦୁଆର ମୁହଁରେ ନିପତିତ । ତାଙ୍କର ଆଶା ଦେବତାଙ୍କ ଆବିର୍ଭାବ ଅବଶ୍ୟମ୍ଭାବୀ । ଭକ୍ତିର ଦୃଢ଼ତା ଓ ନୈତିକ ବଳ ପରୀକ୍ଷା ପାଇଁ ଦେବତାଙ୍କ ଏହି ଚିତ୍ତବିଭ୍ରମ— କ୍ଷଣିକ ପାଇଁ ।

ନିହାର ଚିନ୍ତା ମଣି ସାରିବା ପରେ ଖୁବ୍ ମନଯୋଗ ସହିତ ପ୍ରତିମାର ଆଙ୍କିଥିବା ଏ ଛବିଟିକୁ ନିରେଖି ଦେଖିଲା । ବୁଝିପାରିଲା ନାହିଁ ତାହା ପ୍ରତିମାର ନିଜର ଅର୍ଥ ବୋଲି । ପ୍ରତିମା ପରେ ରହିଲା ଦିନଠାରୁ ନିଜ ହୃଦୟରେ ଚିତ୍ର ଅଙ୍କେଇ ଯାଇଥିବାର ପରିଚୟ ପାଇଲା ସେ ଏହି ଚିତ୍ରରୁ !

ନାହାର ପ୍ରତିମାର ଶୈଶବ ଏବଂ ଧାର୍ମିକ ତଥା ଅବସ୍ଥାର
ହବରେ ବ୍ୟସ୍ତ ଅଛି ହଠାତ୍ ପୋଷ୍ଟ ପିଅନ୍ ଆସି ହାଜର ହେଲା
କର ଟୋକା ପିଅନ୍ ଠାରୁ ଚିଠିଟା ଆଣି ବାବୁଙ୍କ ହାତକୁ ବଢ଼ାଇ
ଦେଲା ।

ନାହାର ଚିଠିଟା ଖୋଲି ପଢ଼ିଲା ।

କନକ ଦେଉଳ ପୁର
କଟକ

ଆଦରର ନାନୁ ମୋର,

ସତେ କଅଣ ବାପ, ମାକୁ ତୋର ଏତେ ଚଞ୍ଚଳ ଭୁଲି
ଗଲୁ ? ମୁଁ ଜୀବନଧରି ବଞ୍ଚିରହିବାରେ ଲାଭ କଅଣ ? ମୁ କେତେ
ହତଭାଗିନୀ ସତେ । ସ୍ୱାମୀଙ୍କୁ ଖାଇଦେଇ ଛଅମାସ ହେଲା ପୋଡ଼ା
କପାଳକୁ ଧରି ଜଗିବସିଛୁ । ତୋର ମଧ୍ୟ ଟିକିଏ ହେଲେ ଦୟା
ନାହିଁ । ଝିଅଟି ତୋର ସବୁବେଳେ ବାପା ବାପା ହୋଇ ଝୁରୁଛି ।
ତୁ ଏତେ ନିଷ୍ଠୁର ।

ତୁ ଗୁଲିଗଲା ପରେ ବାପା କେତେ କେତେ ଖୋଜିଛନ୍ତି ।
ନିଜ ପତ୍ରିକାରେ କେତେ ବିଜ୍ଞାପନ ଛାପିଛନ୍ତି । ଶେଷରେ କିଛି ପତ୍ତା
ନପାଇ ନୀରବ ରହିଲେ । ମୁଁ ତ ମାଇପି ଲୋକ । କଅଣ ଅବା
କରନ୍ତି ? ସନତ ଠାରୁ ତୋର କଥା ସମସ୍ତ ଶୁଣିଲି । ଭଲଭାବରେ
ଅଛୁ ଶୁଣି ମନରେ ଟିକିଏ ଆଶ୍ୱସ୍ତି ଆସିଲା । ହେଲେ ତୁ ନ ଆସିବା
ପର୍ଯ୍ୟନ୍ତ ମନରେ ମୋର ଶାନ୍ତି ନାହିଁ ।

ଦୟାକରି ଆସିବୁ ଯଦି ମା ଠାରେ ତୋର ଲୋଭଅଛି । ଇତି ।

ତୋର ଶୁଭ କାଂକ୍ଷୀ
ମା

ନିହାର ବିଶ୍ୱାସ କରି ପାରିଲା ନାହିଁ—ଏଇଟା ତାର ମା'ର ଚିଠି ବୋଲି । ଘରେ କିପରି ତାର ଖବର ପାଇଲେ । ହାତରୁ ଚିଠି ଖଣ୍ଡିକ ତଳେ ଖସି ପଡ଼ିଲା । ବାପା ସେ ଇହ ଧାମରେ ଆଉ ନାହାନ୍ତି । ତାହାର ପାଇଁ ଝୁରି ଝୁରି କଣ୍ଠା ହୋଇ ଶେଷରେ ଆଖି ବୁଜି ଦେଇଗଲେ । ଅଭାଗା ସେ ମଲାବେଳେ ତାଙ୍କୁ ଟିକିଏ ଦେଖି ପାରିଲା ନାହିଁ ।

ଏହି କଥା ଭାବି ମନରେ ଆଉ ତାର ଶାନ୍ତି ରହିଲା ନାହିଁ । ସେହି ମୁହୂର୍ତ୍ତରେ ଘରକୁ ଉଡ଼ି ପଳାଇ ବାକୁ ଇଚ୍ଛା ହେଲା । ମନେ ମନେ ଭାବିଲା ମା'ର ଗୋଡ଼ ତଳେ ପଡ଼ି ସେ ତାର ଦୋଷ ପାଇଁ କ୍ଷମା ମାଗି ନିଅନ୍ତା । ସାନ ଝିଅ ଟୁନିକୁ ଟେକି ଅଣନ୍ତା କୋଳକୁ ତାଇ ।

\+ + + +

ଏହାପରେ ଅତୀତର କେତେ ଦୁଃଖପୂର୍ଣ୍ଣ ଚିତ୍ର ଗୋଟିକ ପରେ ଗୋଟିଏ ନାଚିଯାଏ ତା ଆଖି ଆଗରେ । ଅନେକ ସମୟରେ ଏହି ଚିନ୍ତାରେ ସେ ବିବ୍ରତ ହୋଇ ପଡ଼େ । ମାତ୍ର ସେ ସବୁ କୁଆଡ଼େ ପୁଣି ଉଭେଇ ଯାଏ । ପ୍ରତିମାର କୁହୁକ ପୂର୍ଣ୍ଣ ଦିବ୍ୟ ଢଳ ଢଳ ବଦନ ମୁକୁରରେ ସେ ଦେଖିବାକୁ ପାଏ ଭବିଷ୍ୟତର ସୁନେଲି ରୂପଚ୍ଛଟା । ଅତୀତର ବିଷାଦପୂର୍ଣ୍ଣ ଶୋକଭରା ଛବି ନେତ୍ରପଟରୁ ଅପସରି ଯାଏ ।

ନିହାର ଭାବେ—ତାକୁ ଯେ ଭାଇ, ବାପ ଆଉ କୁଟୁମ୍ବସମସ୍ତଙ୍କୁ ଛାଡ଼ିବାକୁ ହେବ । ସମାଜକୁ ସେ ଭ୍ରୂକ୍ଷେପ କରେ ନା । ସୁନାର ସଂସାର ଗଢ଼ିବାକୁ ପ୍ରତିମା ନିକଟରେ ସେ ପ୍ରତିଜ୍ଞା କରି ନେଇଛି । ସେହି ପ୍ରତିଜ୍ଞା ଅନୁସାରେ ତାକୁ କାର୍ଯ୍ୟ କରିବାକୁ ପଡ଼ିବ । ବାପା ତାର ଭୁଲି ଯାଇଛନ୍ତି । ଦୁନିଆର ଏ ନିତ୍ୟ ନିୟମ । ସେଥିରେ ଅନ୍ୟ

ଶୋଚନା କରିବାର କାରଣ କିଛି ନାହିଁ । ଏହିପରି ନାନା କଥା ଭାବି
ହିଁ ସେ ତାର ନୂତନ ସଂସାରରେ ଭାସି ବୁଲେ ।

ମାଙ୍କର ଚିଠିଟାପାଇ ନିହାର ମନରେ ଅଳ୍ପ ସ୍ଥିରତା ନଥିଲା ।
ଚିଠିଟା ପଢ଼ିବାରେ ବ୍ୟସ୍ତ ଥିବା ବେଳେ କେତେବେଳୁ ପ୍ରଭାମର
ଚିଠିଟା ପବନରେ ଉଡ଼ି ଯାଇଛି ନିହାରର ଆଉ ମନେ ନାହିଁ ।
ସେ ଗଣ୍ଡି ଯାଇ ମିନତୀ ଦେବୀଙ୍କ ହାତୁଡରେ ପଡ଼ିଲା । ସେ ତାହା
ଲାଇ ରଖିଲେ—ଦୟାଲ୍ ବାବୁଙ୍କୁ ଦେଖାଇବା ଉଦ୍ଦେଶ୍ୟରେ ।
ୟାଲ ବାବୁ ଚିଠିଟା ପଢ଼ି ମନେ ମନେ ବିରକ୍ତ ହୋଇ ପଡ଼ିଲେ ।
ହାରର ଏ ଗୁପ୍ତ ପ୍ରେମ ଅଭିଯାନର ବୃତ୍ତାନ୍ତ ପାଇ ମନଟା ତାଙ୍କର
କିଏ ଦବିଗଲା । ବିଶ୍ୱାସ କରି ପାରିଲେ ନାହିଁ ତାହା ନିହାରର
ଣି ।

ସେ ଭାବିଲେ ନିହାରର ଚରିତ୍ର ସଂପୂର୍ଣ୍ଣ ଭଲ । ପୂର୍ଣ୍ଣ ବିଶ୍ୱାସ
ଧ୍ୟ କରୁଥିଲେ ସେ ତାକୁ । ସେ ପୁଣି ତାଙ୍କଠାରେ ଏ
ଶ୍ୱାସ ଘାତକତା କରିବା ଅସମ୍ଭବ । କିନ୍ତୁ ଏ ଯେ ପ୍ରତ୍ୟକ୍ଷ ପ୍ରମାଣ ।
ଜ ଆଖିଟାକୁ ସେ ଅବିଶ୍ୱାସ କରି ପାରିଲେ ନାହିଁ । ଠିକ କଲେ
ହାରକୁ ପାଖକୁ ଡାକି ବିଷୟଟା ବୁଝିବେ । ଗୁରୁଙ୍କ ଯାଇ ଖବର
ଲା ।

ନିହାର ବୈଠକ ଖାନାକୁ ପଶି ଯାଇ ଦେଖିଲା ବାବାଙ୍କ
ତରେ ପ୍ରଭାମାର ସେହି ଚିଠିଟା ଦେହ ମୁଣ୍ଡ ତାର ଥରି ଉଠିଲା ।
ୁରଙ୍କ ପରି ଯାଇ ଦୟାଲ୍ ବାବୁଙ୍କ ଆଗରେ ଠିଆ ହେଲା ।

ବାବୁ କହିଲେ "ନିହାର ଅଳ୍ପ ଏତେ ଦିନର ଆଦର, ସ୍ନେହ
ହାଗର ଉପଯୁକ୍ତ ପୁରସ୍କାର ଦେଇଛ ତୁମେ । କଥା ପଦକ
ହ ଆଖିରୁ ତାଙ୍କର ଦୁଇଧାର ଲୁହ ଗଡ଼ି ପଡ଼ିଲା ।

ଜିନ୍ତୁ ନିହାର ଯେ ପ୍ରତିମାକୁ ଠିକ୍ କରି ନେଇଛି ତାର ଜୀବନ ସଙ୍ଗିନୀ ରୂପେ । ତାର ପାଇଁ ପ୍ରତିମା ସହୁଛି କେତେ ନିନ୍ଦା ଓ ଅପବାଦ । ତା ବିରୁଦ୍ଧରେ ନିହାର ହଜାର ପାମ୍ପ ଲେଟ୍ ଏସ ହୋଇଛି । ପ୍ରତିମା ସେ ସବୁ ମୁଣ୍ଡ ପୋତି ସହି ନେଇଛି । ତା'ଠାରେ ସେ ଏତେ ବିଶ୍ୱାସଘାତକତା ଦେଖି ପାରିବ ନାହିଁ ।

ମୋର ପାଇଁ ଯେଉଁ ପ୍ରତିମା ସମାଜରେ ନିନ୍ଦା ଓ ଅପବାଦକୁ ଭ୍ରୂକ୍ଷେପ ନ କରିବାର ଉଜ୍ଜ୍ୱଳ ଭବିଷ୍ୟତ ଜୀବନକୁ ଜଳାଞ୍ଜଳିଦେଇ ମୋ ଜୀବନର ଅନୁଗାମିନୀ ହୋଇଛି ସମ୍ମୁଖରେ କିପରି ଅବା ମୁଁ କାପୁରୁଷତା ଓ ନୀଚତାର ପରିଚୟ ଦେବି ? ଏହା ମୋ ପକ୍ଷରେ ଅସମ୍ଭବ କଥା । ମୁଁ ଏହା କରି ପାରିବିନାହିଁ ।

ଏତକ କହି ପକାଇ ନିହାର ଚାଲି ଆସିଲା ତାର କୋଠରୀକୁ ଦୟାଲବାବୁ ଦେଖିଲେ ନିହାର ଯେ ଟଳିବାର ନୁହେଁ । ମନେ ମନେ କେତେ କଥା ସେ ଭାବିଲେ । ନିହାରର ଏହି କାର୍ଯ୍ୟ ପାଇଁ ଶେଠ ଗୋବିନ୍ଦ ଦାସଙ୍କ ଠାରେ ତାଙ୍କୁ ଅପ୍ରିୟ ହେବାକୁ ପଡ଼ିବ ।

କେତେଦିନ ହେଲା ନିହାରର ବିବାହ ବିଷୟ ନେଇ ସେ ଗୋବିନ୍ଦ ଦାସଙ୍କ ସହିତ କଥାବାର୍ତ୍ତା ହୋଇ ସବୁ ଠିକ୍ କରି ନେଇଥିଲେ । ଅବଶ୍ୟ ନିହାରର ଅଜ୍ଞାତସାରରେ । ଦୟାଲ୍ ବାବୁ କେତେଥର ଗୋବିନ୍ଦ ଦାସଙ୍କ ଘରକୁ ଯାଇ କନ୍ୟାକୁ ଦେଖି ଆସି-ଛନ୍ତି । ଝିଅଟି ତାଙ୍କର ବେଶ ମନକୁ ପାଉଛି । ଆଧୁନିକ ଶିକ୍ଷି[illegible] ସମାଜରେବଢ଼ି ଅସିଛି । ଦୟାଲବାବୁ ନିହାରର କେତେଗୁଣ୍ଡ ଫଟୋ ମଧ୍ୟ ତାଙ୍କ ପାଖକୁ ପଠାଇ ଦେଇଛନ୍ତି ।

ସେ ଯାଗାରେ ବିବାହ ହେଲେ ତାଙ୍କର ପୁଅଇଛା କାହିଁକି ନା ଶେଠ ଗୋବିନ୍ଦ ଦାସଙ୍କ ଠାରୁ ସେ ପାଇବେ ଗୋଟିଏ [illegible] ସମସ୍ତ ସ୍ୱତ୍ୱ । ନିହାର ହେବ ସେଥିର ମାଲିକ । ତା ଛଡ଼ା ନଗଦ

ଞ୍ଚଲକ୍ଷ ଟଙ୍କାର ନଗଦ ଚେକ୍ ମିଳିବ । ଦୟାଳବାବୁ ବହୁ ଆଗରୁ
ମସ୍ତ ପ୍ଳାନ କରି ନେଇ ଛନ୍ତି । ନିହାରର ହାତକୁ ଦୁଇହାତ କରି
ଦେଲେ ସମ୍ପତ୍ତିର ଅଧା ତା ନାମରେ ଉଇଲ୍ କରି ଦେବେ । ଯା
ତରେ ସେ ନିହାରକୁ ପୋଷ୍ୟ ପୁତ୍ର ରୂପେ ଗ୍ରହଣ କରି ନେବାକୁ
ସ୍ତୁତ ଥିଲେ ।

ସେଇଥି ପାଇଁ ନିହାରର ବହୁଦିନରୁ ତାର ନାମଟା ବଦଳେଇ
ଦେଇଛନ୍ତି 'ଦୟାଳ ସମ ରଞ୍ଜନ୍' ବୋଲି ।

ମାତ୍ର ଏ ସମସ୍ତ ସୁଯୋଗ ସେ ନିଜ ହାତରେ ହରାଇଲା ।
ମସ୍ତଙ୍କର କଥା ତାକୁ ବିଷ ବତ୍ ବୋଧ ହେଲା । କେବଳ ପ୍ରତିମାର
ରଳ ସୌମ୍ୟ ମୂର୍ତ୍ତି ତାର ଏକମାତ୍ର ଚିନ୍ତା ବସ୍ତୁ ହୋଇ ପଡ଼ିଲା ।
ୟାଳବାବୁ କେତେ ବୁଝାଇଲେ । ମିନତି ଦେବୀ କାନ୍ଦି କାନ୍ଦି ଥକି
ଡ଼ିଲେ । ଦୁଇଜଣଙ୍କ ମନରେ ଭାରି ଦୁଃଖ । କିନ୍ତୁ ସେ ସବୁକୁ
ହାର କର୍ଣ୍ଣପାତ କଲା ନାହିଁ ।

ସେ ଯୌତୁକ ଲୁହେଁନା । ତାର ମତ—ପ୍ରେମ ଅର୍ଥର ବିନି-
ମୟରେ ମିଳେ ନାହିଁ । ପ୍ରକୃତ ପ୍ରେମ କେବଳ ସମ୍ଭବ ଅନ୍ତର ଓ
ନ୍ତରର ସାମିପ୍ୟ ଏବଂ ଅନ୍ତର ଓ ଅନ୍ତରର ବିନିମୟରେ । ପ୍ରତିମାକୁ
ସେ ତାର ଜୀବନର ଚିରସଙ୍ଗିନୀ କରି ନେଇଛି । ସେଥିରେ ପାଇଛି
ସେ ସ୍ୱର୍ଗୀୟ ସମ୍ପଦ । ପାର୍ଥିବ ସମ୍ପଦରେ ତାର ଲୋଡ଼ା ନାହିଁ ।

ଯାହାକୁ ସେ ବାଛି ନେଇଛି ନିଜର ପତ୍ନୀ ରୂପେ । ସେ
କେବଳ ତାର ଜୀବନ ମରୁରେ ସିଞ୍ଚିଦେବ ଶାନ୍ତି ବାରି । ସ୍ନେହ
ୀତଳ ବାରି କଣାରେ ତପ୍ତ ହୃଦୟ ତାର ଶିହରି ଉଠିବ ।

ଦୟାଳ ବାବୁ ଯେ ଏଥିର ସଂପୂର୍ଣ୍ଣ ବିରୋଧୀ ତାଙ୍କ ପରି
ଜାତିପତି ଶେଠଙ୍କର ମର୍ଯ୍ୟାଦା ଓ ସମ୍ମାନକୁ ସେ ତଳେ ପକାଇ
ଦେବାକୁ ଚାହାନ୍ତି ନାହିଁ । ପ୍ରତିମା ଯେ ସାମାନ୍ୟ ଗୋଟାଏ ନର୍ସର

ଝିଅ । ତାହାକୁ ବିବାହ କରିବା ଅର୍ଥ ନିଜ ନାମରେ କଳଙ୍କ ଲଗାଇବା।

ଦୟାଲବାବୁ କହିଲେ ସେ ଏତେବଡ଼ କଳଙ୍କକୁ ପ୍ରଶ୍ରୟ ଦେଇ ପାରିବେ ନାହିଁ । ଏପରି ଅସଂଗତ ବିବାହରୁ ତାଙ୍କୁ କ୍ଷାନ୍ତ ହେବାକୁ ପଡ଼ିବ ।

ନିହାର ଟିକିଏ ଗମ୍ଭୀର ଗଳାରେ ଉତ୍ତର ଦେଲା ସେ ଏତେ ଦୁର୍ବଳ ନୁହେଁ । ସାମାନ୍ୟ ଗୋଟାଏ କଥା ପାଇଁ ଜଣେ ସରଳା ଅବଳାକୁ ଆଶା ଦେଇ ତାକୁ ନିରାଶ କରିପାରିବ ନାହିଁ ସେ । ପ୍ରଥମ ଦେଖେ ବିଶ୍ୱାସ କରିଛି ତାକୁ । ତା ଉପରେ ସାରା ଜୀବନର ଆଶା ଭରସା ସେ ଢାଳି ଦେଇଛି । ନିହାର ମଣିଷ ହୋଇ କିପରି ତାକୁ ବିଶ୍ୱାସରେ କାଟି ଦେବ ? ନା ସେ ତାହା କରି ପାରିବ ନାହିଁ।

ନିହାର ଏହାପରେ ସ୍ଥିର କରି ନେଲା । ଦୟାଲବାବୁ ତା ଜୀବନର ପ୍ରେମପଥରେ ଏକମାତ୍ର କଣ୍ଟକ । ଲକ୍ଷ ପଥରେ ନିଷ୍କ ରହିବାର ପଣ ଇଚ୍ଛା ତାକୁ ବାଧ୍ୟ ହୋଇ ଦୟାଳ ବାବୁଙ୍କ ଘ ଛାଡ଼ିବାକୁ ପଡ଼ିବ । ଏହା ଭାବି ସେ ତାଙ୍କ ଘରୁ ବାହାରି ଚାଲି ଅନ୍ୟତ୍ର ।

ତା ମନରେ ଭାରି ଖୁସି । ସେ ବର୍ତ୍ତମାନ ମୁକ୍ତ । ପ୍ରେମପଥ ତ ପରିଷ୍କାର ହୋଇ ଯାଇଛି । ତାହାକୁ ଧ୍ୱଂସ କରିବାକୁ ଦୁନିଆରେ ଆ କେହି ନାହିଁ

× × × × ×

କେତେଦିନ ହେଲା ନିହାର ଓ ପ୍ରଥମା ଗଢ଼ି ନେଇଛ ସେମାନଙ୍କର ନୂତନ ସଂସାର । କୁଲ୍ଟି ପକ୍ଷୀ ଆକାଶର କେଉଁ ଅଜଣା କୋଣରେ ବାନ୍ଧିଛନ୍ତି ସେମାନଙ୍କର ନୀଡ଼ । ଆକାଶର ଚ ହସି ଯାଏ । କେତେବେଳେ ମଉଳି ଯାଏ । ପୁଣି ପର ମୁହୂର୍ତ୍ତରେ ...

ଉଠେ । କିନ୍ତୁ ଏ ଦୁହିଁଙ୍କର ପ୍ରେମ ସେ ଅସମ୍ପୂର୍ଣ୍ଣ । ବରଂ କ୍ରମେ କ୍ରମେ ତାହା ବଢ଼ି ଚାଲିଛି ।

ନୀହାର ଆସିବା ଦିନଠୁ ପ୍ରତିମା ଘର ଜୀବନ୍ତ ହୋଇ ଉଠିଛି । ପ୍ରତ୍ୟେକ କୋଣରେ ଫୁଟି ଉଠିଛି ନୂତନତ୍ୱ । ପ୍ରତିମା ପ୍ରାଣରେ ନୀହାର ଆଣି ପାରିଛି ପ୍ରକୃତ ସରସତା । ନିର୍ମଳାଦେବୀ ମଧ୍ୟ ବେଶ୍ ଅଶ୍ୱସ୍ତି ଲାଭ କରିଛନ୍ତି । ତାଙ୍କର ଇଚ୍ଛା ଭଗବାନ ଶୀଘ୍ର ନୀହାର ଓ ପ୍ରତିମାର ଜୀବନକୁ ସୁଖମୟ କରନ୍ତୁ । ଦିନ ଗୁଡ଼ାକ ସେମାନଙ୍କର ଖୁବ୍ ମଉଜରେ କଟେ ।

ଦୟାଲ ବାବୁଙ୍କ ଘରୁ ଆସିବା ଦିନଠାରୁ ନୀହାରର ସ୍କୁଲକୁ ଯିବାର ବନ୍ଦ ହୋଇଛି । ସେ ଆଉ ଅଠ ସ୍କୁଲର ଛାତ୍ର ନୁହେଁ । ପଢ଼ିବାରେ ତାର ଆଉ ଇଚ୍ଛା ନାହିଁ । ପ୍ରତିମା କେତେଥର ବାଧ୍ୟ କଲା ତାକୁ ଆଉ ଥରେ ପଢ଼ିଯିବାକୁ । ଅନ୍ତତଃ କୋର୍ସଟା ଶେଷ କରିଦେଲେ ତା ପକ୍ଷରେ ଖୁବ୍ ଭଲ ।

ପ୍ରତିମା ଘରେ ପଇସାର କିଛି ଅଭାବ ନଥିଲା । ବାପା ମରିଯିବା ପୂର୍ବରୁ ତା ନାଁରେ ଦଶହଜାର ଟଙ୍କା ବ୍ୟାଙ୍କ୍‌ରେ ଜମା କରି ଯାଇଥିଲେ । ସେଥିରେ ସେମାନେ ଅତି ସୁରୁଖୁରୁରେ ଚଳି ଯାଉଛନ୍ତି ।

କିନ୍ତୁ ନୀହାର ମନ କଲା — ପଢ଼ିବାରେ ମୋର ଆଉ ଧୈର୍ଯ୍ୟ ନାହିଁ । ମୋଟ ଉପରେ ସାଙ୍ଗ ପିଲାଙ୍କ ଥଟ୍ଟା ପରିହାସକୁ ସହିବା ପାଇଁ ଛତପଅର କରିନେବାର ମୋର ଆଉ ସାହସ ନାହିଁ ।

ଖାଲି ବସି ରହିବା ଅପେକ୍ଷା କିଛି ନା କିଛି ଗୋଟେ ଏ କାମରେ ଲାଗିବା ପାଇଁ ସେମାନେ ମନସ୍ଥ କଲେ । ବସିବା ଅପେକ୍ଷା ଖାଟିବା ଭଲ, ଏହି ନୀତିକୁ ଅବଲମ୍ବନ କରି ସେମାନେ ଆରମ୍ଭ କରିଦେଲେ ଗୋଟାଏ ବ୍ୟବସାୟ । ମୂଳଧନର କିଛି ଅଭାବ ନଥିଲା । ଦୟାଙ୍କରୁ

ଟଙ୍କା ଅଣା ଯାଇ ବ୍ୟବସାୟରେ ଲଗିଲା । ଘର ସାମନାରେ ଗୋଟିଏ ଦୋମହଲା କୋଠା ଭଡ଼ା ନେଇ ଦୋକାନ ଆରମ୍ଭ ହେଲା ।

ନୂଆନୂଆ ନିହାରବାବୁ ବେଶ ଆଗ୍ରହ ନେଇ ବ୍ୟବସାୟରେ ଲାଗିପଡ଼ିଲେ । ତାଙ୍କର ଆଉ ଫୁରସତ୍ ନଥାଏ । ପ୍ରତିମା ମଧ୍ୟ ଅନେକ ସମୟରେ ଯାଇ ତାଙ୍କୁ ହିସାବ କିତାବରେ ସାହାଯ୍ୟ କରନ୍ତି । କ୍ରମେ କ୍ରମେ ଦୋକାନ ଟିର ଆୟ ବଢ଼ିଚାଲିଲା । ବେଶ୍ ଅଧୁନାତନ ଧରଣର ଗୋଟିଏ ଦୋକାନ । କୌଣସି ଜିନିଷପତ୍ରର ଅଭାବ ନାହିଁ । ପ୍ରତିମା ଦେବୀଙ୍କ ନାମ ଅନୁସାରେ ଦୋକାନଟିର ନାମ ରଖା ଯାଇଛି — ପ୍ରତିମା ଷ୍ଟୋର ।

ଅଳ୍ପ କେତେ ମାସ ଭିତରେ ଦୋକାନଟିର ପରିସର ଏତେ ବଢ଼ିଗଲା ଯେ ବାଧ୍ୟବାଧକ ଭାବରେ ଭିନ୍ନ ଭିନ୍ନ ଶାଖା ଖୋଲା ଗଲା । ପ୍ରତ୍ୟେକ ବ୍ରାଞ୍ଚରେ ଅସଂଖ୍ୟ କିରାଣୀ ସେଲ୍‌ସମ୍ୟାନ୍ ଓ ପିଅନ୍ ନିଯୁକ୍ତ ହେଲେ । ନିହାର ବାବୁ ଓ ପ୍ରତିମା ଅଗାଧ ଧନର ମାଲିକ ହେଲେ । ନିହାରବାବୁ ନାମକୁ ମାତ୍ର ପ୍ରୋପ୍ରାଇଟର୍ ହୋଇ ରହିଲେ ।

ଧନର ସୁଅ ବଢ଼ି ଚାଲିବା ସଙ୍ଗେ ସଙ୍ଗେ ସେମାନଙ୍କ ପ୍ରେମର ସୁଅ ମଧ୍ୟ ବଢ଼ି ଚାଲିଲା । ସେହି ପ୍ରେମ ସୁଅରେ ଭାସିଗଲେ ନିହାର ଓ ପ୍ରତିମା ଧନାନ୍ଧ ହୋଇ । ନିହାର ବର୍ତ୍ତମାନ ପୂର୍ବର ନିରୁ ବାବୁ ନୁହେଁ । ସମସ୍ତଙ୍କ ପାଖରେ ସେ ବର୍ତ୍ତମାନ 'ପ୍ରୋପ୍ରାଇଟର ମିଷ୍ଟର ନିହାର ରଞ୍ଜନ ଦାନାଜୀ' ନାମରେ ସୁପରିଚିତ ।

ନିହାର ବାବୁଙ୍କର ପ୍ରକୃତରେ କିଛି କାମ ନାହିଁ । ଦୋକାନର ପରିସର ବଢ଼ିଚିବା ସଂଗେ ସଂଗେ ତାଙ୍କ ଉପରୁ ପରିଶ୍ରମର ଭାର କମି ଯାଉଛି । ସେ ନାମକୁ ମାତ୍ର ପ୍ରୋପାଇଟର୍ । ତାଙ୍କୁ ଏତେ

ଦୋକାନ ରେ ଦେଖିବା ସ୍ୱପ୍ନ । ସିଅନ୍ ପାଇଲ୍ ପଣ ଧର ବସାକୁ ଗଲେ ନିହାର ବାବୁ ଗାଲ୍ ଦସ୍ତଖତ୍ ମାରନ୍ତି ।
ବାକୀ ସମୟତକ ତାଙ୍କର କଟିଯାଏ ପ୍ରତିମା ସହିତ ପ୍ରେମାଳାପରେ । ଦିନୁଦିନ ସେମାନଙ୍କ ପ୍ରେମାଙ୍କୁର ଦୃଢ଼ ହେବାକୁ ଲାଗିଲା । ପ୍ରେମର ଶୃଙ୍ଖଳ ଉଭୟଙ୍କୁ ବାନ୍ଧିରଖିଲା ଚିରଦିନ ପାଇଁ । ସେମାନଙ୍କ ଦୈନନ୍ଦିନ କାର୍ଯ୍ୟକ୍ରମ ହେଉଛି ସିନେମା ଦେଖିବା, ସମୁଦ୍ର କୂଳରେ ବୁଲିବା ଓ ପାର୍କରେ ବସି ଖୁସି ଗପ କରିବା । ଏଥିରେ ସେମାନେ ଭୁଲି ଯାଆନ୍ତି ଅତୀତ ଓ ଭବିଷ୍ୟତକୁ । ଦୁନିଆ ସେମାନଙ୍କୁ ମନେହୁଏ ଗୋଟିଏ ଖେଳଘର । ସେମାନଙ୍କ ଆଖିରେ ସମସ୍ତେ ଦେଖାଯାନ୍ତି ସାମାନ୍ୟ ତୃଣପରି ।

କ୍ଲବକୁ ଗଲେ, ପାର୍କକୁ ଗଲେ ଅର୍ଥାତ୍ ଘରୁ ଗୋଡ କାଢ଼ିବା ମାତ୍ରେ ସବୁବେଳେ ମୋଟର ଗାଡ଼ି । ଡ୍ରାଇଭର ବାବୁଙ୍କ ହୁକୁମକୁ ଅପେକ୍ଷା କରି ବସିଛି । ଏବେ ନିହାର ବାବୁଙ୍କ ମୋଟରରେ ବୁଲିବା ଅଉକଟା ଢେଇଁ ଚଢ଼ି ବୁଲନ୍ତି । ଭିଉକାଟେଜ ଅଗାର୍ଡ଼େନ୍ସ, ମ୍ୟୁଜିୟମ କାଲଭର୍ଟ ପାସ୍ପାଖ ବନ୍ଦର ସେମାନଙ୍କ ପ୍ରଧାନ ଅମୋଦସ୍ଥଳୀ ।

ପ୍ରତିମା ନିହାରକୁ ଖୁବ୍ ଭକ୍ତି କରେ । ପ୍ରାଣଠାରୁ ବଳି ସେ ତାକୁ ଭଲପାଏ । ଏଇଥି ପାଇଁ ସେ ନିହାରକୁ ଅତି ନିଜର କରି ପାଇଛି । ନିହାର ମଧ୍ୟ ସେଥିରେ ସବୁ ଭୁଲି ଯାଇଛି । ପ୍ରତିମାର ପ୍ରେମ ଓ ସୌନ୍ଦର୍ଯ୍ୟ ନିକଟରେ ସେ ବଳିଦେଇଛି ତାର ମନ୍ତ୍ରବୁଦ୍ଧିକୁ । ସେଇଥିରୁ ପାଇଛି ସେ ପୈଶାଚିକ ଇନ୍ଦ୍ରିୟ ଲାଳସାର ପରିତୃପ୍ତି ।

ସନ୍ଧ୍ୟା ଅଠଟା ସମୟ । ଗ୍ରୀଷ୍ମ ଗରମ ହେତୁ ଘର ଭିତରେ ଅଉ ବସି ହେଉ ନାହିଁ । ଇଲେକଟ୍ରିକ୍ ଆଲୁଅ ଟେବୁଲ ଉପରେ ଝଲେଇ ହୋଇ ଜଳୁଛି ।ନୀହାର ଆର୍ମ ଚେୟାରରେ ବସି ଖଣ୍ଡିଏ ସିଗାରେଟ ଟାଣିବାରେ ବ୍ୟସ୍ତ । ପ୍ରତିମା ଦେବୀ ପାଖରେ ଅନ୍ୟ ଗୋଟିଏ ଚେୟାରରେ ବସି ମଧୁର ଗାନ ଆରମ୍ଭ କରି ଦେଇଛନ୍ତି । ଗୀତର ସୁରରେ ମାତାଲ ହୋଇ ପଡ଼ିଛନ୍ତି ଉଭୟେ ।

ଚାକର ଆସି ଛିଡ଼ା ହୋଇ ଡାକିଲା—ବାବୁ ବାବୁ ।

ବାବୁ ବିରକ୍ତ ହୋଇ ହାରମୋନିୟମଟା ଟିକିଏ ବନ୍ଦକରି ପଚାରିଲେ—ଖବର କଅଣ ?

ଚାକରଟି ଭୟରେ ଥରି ଥରି ବାବୁଙ୍କ ଆଡ଼କୁ ଟେଲିଗ୍ରାମଟି ବଢ଼ାଇ ଦେଲା । ନୀହାର ଚମକି ପଡ଼ି କହିଲେ,—ଏ ଯେ ଏକ୍ସ-ପ୍ରେସ ଟେଲିଗ୍ରାମ ।

ମନେ ମନେ ତାର ଆତଙ୍କ ଜନ୍ମିଲା । ଘର୍ମ ଗଣ୍ଡିକ ଆସି ପଡ଼ିଲା । ସେତିକିରେ ମନ ତାର ଚଞ୍ଚଳ ହୋଇ ପଡ଼ିଲା । ସଙ୍ଗେ ସଙ୍ଗେ କାଗଜ ଖଣ୍ଡିକ ସେ ଛିଣ୍ଡାଇ ପକାଇଲା । ଜଣାପଡ଼ିଲା ସତେ ଯେପରି ମୁଣ୍ଡ ଉପରେ ତାର ଆକାଶ ଛିଡ଼ି ପଡ଼ୁଛି ! ହୃଦୟର

ତାହାକୁ ସେ ଗୁପ୍ତି ରଖିଲା ଅନ୍ତର ଭିତରେ । ମାତ୍ର ତାହା ଦରକାର ନାହିଁ ସେ ଯେ ଲକ୍ଷ୍ମୀର ସମ୍ପର୍କ । ଏବଂ ମାୟା ମରୀଚିକା ପଛରେ ଇଁ ସେ ତାର ଅତୀତ ଦୁନିଆକୁ ଭୁଲି ଯାଇଛି । ଏ ସମସ୍ତ କଥା ଭ ନିହାରର ବଦନରେ ଏକ ବିଷାଦ ଭାବ ଖେଳିଗଲା ।

ତାହାର ଏ ବିଷର୍ଣ୍ଣତା ଦେଖି ସ୍ମିତା ଆଶ୍ଚର୍ଯ୍ୟ ହେଲା । ପଚାରିଲା ବ୍ୟାପାରଟା କଅଣ ।

ନିହାର କହି ଉଠିଲା—ସର୍ବନାଶ ।

ତାକୁ ଯେ ସେହି ମୁହୂର୍ତ୍ତରେ ଘର ଛାଡ଼ିବାକୁ ହେବ । ବନ୍ଧୁ ଜଗତ୍ ଘୋର ବିପଦଗ୍ରସ୍ତ । ତାଙ୍କୁ ସାହାଯ୍ୟ କରିବା ନିହାରର ଶାନ୍ତ କର୍ତ୍ତବ୍ୟ । ମୋଟର ନେଇ ଡ୍ରାଇଭର ଚାଲିଲା ଷ୍ଟେସନକୁ ାବୁଙ୍କୁ ଛାଡ଼ିଦେଇ ଅଜିମ୍ ଗାଁ । ମୋଟର ଲେଉଟାଇ ଆଣିଲା ହାର ଶିଭଢନ ପାଇଁ ବିଦାୟ ନେଇ ଚାଲିଲେ ନିଜ ଘରକୁ ।

ଏତେ ଦିନରେ ତାର ମନର ପରିବର୍ତ୍ତନ ଆସିଲା । ସେ ବଲ ସାମାନ୍ୟ ଏକ ସ୍ତ୍ରୀର ମୋହରେ ପଡ଼ି ସେ ତାର ହୃଦୟର ଥାଟିନିଧି ଟୁଣିକୁ ମଧ୍ୟ ଭୁଲି ଯାଇଛି । ସେ ଯେ ପାଷଣ୍ଡନ ହେଲା ୀଷଣ ଟାଇଫଡ୍ ରୋଗାକ୍ରାନ୍ତ । ଜାଣିଶୁଣି ସେ ଛାତିକୁ ପଥର କରି ହୁ ପାରିବ ନାହିଁ । ଦୁନିଆକୁ ତୁଚ୍ଛ ତୃଣବତ୍ ମନେକରି ପ୍ରତିମାର ପ୍ରେମ ମୋହରେ ଅନ୍ଧ ହୋଇ ପଡ଼ିଥିଲା ସେ । ସାମାନ୍ୟ ସ୍ତ୍ରୀର ୋହରେ ପଡ଼ି ସେ ଅଜ ଘରକୁ ଫେରିନି । ଆଦରର ବାପାବୁଡ଼ା ବାପାଙ୍କୁ ମଧ୍ୟ ପଦରେ ପେଲି ଦେଇଛି । ଅଜ ସେ ଉପଚାର ର ପାରିବ ନାହିଁ ।

ଗେଲବସରର ଟ୍ରେନଟି ହିଁଅ ଟୁଣିର ସ୍ନେହକୁ ଏଡ଼ି ନପାରି ାର ଅଜ ଭାଙ୍ଗି ଦେଇଛି ତାର ଅଟ୍ଟାଳୀ ନୀଡ଼ ।

ଗାଡ଼ି ଛୁଟିଲା । ତାହାର ଅପର ଥାର୍ଡ଼ କ୍ଲାସ କମ୍ପାର୍ଟମେଣ୍ଟର ଯାତ୍ରୀ ନୁହେଁ । ଇଲେକ୍ଟ୍ରିକ ପଙ୍ଖା ଘୂରୁଛି । ତାହାର ବାବୁଙ୍କ ସିଗାରେଟ ଧୂଆଁରେ ଡବାଟି ଧୂମାୟିତ ହୋଇ ଉଠୁଛି । କିନ୍ତୁ ତାହାର ମନରେ ଅବଧୌ ଶାନ୍ତି ନାହିଁ । କେବଳ ଯାଇ ଟୁନିକୁ ସେ ତାର କୋଳକୁ ଟେକି ନେଇ ତାର ଲୁଗଣା ଗାଲରେ ଏକ ଚୁମ୍ବନ ଦେବ । ସେଇ ତାର ଏକମାତ୍ର ଇଚ୍ଛା ।

ଦୀର୍ଘ ଦୁଇଦିନ ପରେ ଗାଡ଼ି ଯାଇ ପହଞ୍ଚିଗଲା ଗାଁ ଷ୍ଟେସନରେ ତାହାର ଗାଡ଼ିରୁ ଓହ୍ଲାଇ ସିଧା ଚାଲିଲା ଘରକୁ । ମା ତାହାରକୁ ଦେଖି ଭଇଁ କଇଁ ହୋଇ କାନ୍ଦି ଉଠିଲେ ।

ଘରେ ପହଞ୍ଚିଛି କି ନାହିଁ ତାହାରପଚାରିଲା—ମା ଟୁନି କାହିଁ ମାଟେ କାଠପିଣ୍ଡିଲା ପରି ଛିଡାହୋଇଛି । କାନକୁ ଯେପରି ତାର କିଛି ଶୁଭୁନାହିଁ । ଭିତରକୁ ଯାଇଁ ଦେଖେତ ଘର ନଶାନ । ସ୍ତ୍ରୀ କାଞ୍ଚନ ମୁହଁ ମାଡ଼ି ପଡ଼ିଛନ୍ତି । କାନ୍ଦି କାନ୍ଦି ଆଖି ତାଙ୍କର ଫୁଲି ଯାଇଛି ।

ବଡ଼ପୁଅ ଜ୍ୟୋତିନାଥ ଦୌଡ଼ିଆସି ମାକୁ ହଲାଇ କହି କହି ଉଠିଲା "ମା ମା କିଏ ଜଣେ ମାମୁ ଘରୁ ଲୋକ ହୋଇ ଆସିଛି ।

କାଞ୍ଚନ ଦେବୀ ପୁଅର କଥା ଶୁଣି କାନ୍ଦି ଉଠିଲେ । ତାହା ପାଖକୁ ଯାଇ ଲାଟି ପିଟିଛନ୍ତି କି ନାହିଁ ସେ କେତେ କଥା କ ଛିଣ୍ଡିଲେ । ଦୁଇଦିନର ତାହାର ଟୁନିକୁ ଦେଖିବାପାଇଁ ଧାଇଁଆସିଛି ଏତେଦୂରରୁ ସୁଦୂର ବମ୍ବେରୁ । ଏହି କଥା ଭାବି କୋହ ତାଙ୍କ ଦ୍ୱିଗୁଣିତ ହୋଇ ଉଠିଲା ।

ମା କହିଲେ—ବାପ ତାହାର ଟୁନି ତୋରଆଉ ଇହ ଧାମରେ ନାହିଁ । ତାର ପଠା ହେବାର ପରଦିନ ସେ ଆଖିବୁଜି ଦେ - - -

ଏଚଳ ବହୁ ବହୁ ତାଙ୍କ ବାକ୍ ରୁଦ୍ଧ ହୋଇ ଆସିଲା ।

ଏ କଥା ଶୁଣି ନନ୍ଦାର ଦୁଲ୍ଭନା ତଳେ ପଡିଗଲା । ତାର ଅଉ ଚେତା ନାହିଁ । ବହୁ କଷ୍ଟରେ ମ, ଓ ଦାଦନ ଦେବୀ ସିଷ୍ଟରଙ୍କୁ ସାନ୍ତ୍ୱନା ଦେବାପରେ ସେ ଅଶ୍ୱସ୍ତ ହେଲେ ।

ନନ୍ଦାର ବର୍ତ୍ତମାନ ବୁଝି ପାରୁଛି ତା'ର ନିଜର ଭୁଲ । ସୁନାର ସଂସାର ଗଢ଼ିବାକୁ ସେ କେତେ ସୁଖସ୍ୱପ୍ନ ଦେଖୁ ନ ଥିଲା । କିନ୍ତୁ ଏବେ ସେ ଜାର ସୁନାର ସଂସାର ଚୂନା ହୋଇଯାଇଛି । ସୁନାର ସଂସାରରେ ତାର ଅଉ ପ୍ରୟୋଜନ ନାହିଁ ସେଥିରୁ ଶାନ୍ତି ପାଇବାର ଆଶା ନାହିଁ । ବରଂ ମିଳିବ ଅସନ୍ତୋଷ ଅଶାନ୍ତି ଲଜ୍ଜା ଓ ଦାରିଦ୍ର୍ୟ ।

ଦିନପରେ ଦିନ ବିତିଗଲା । ହେଲେ ନନ୍ଦାର ଅଉ ବଦଳି ପଡ଼ିଲା ନାହିଁ । ଅସ୍ୱୀଯ୍ୱ ସ୍ୱଜନ ବନ୍ଧୁ ବାନ୍ଧବଙ୍କୁ ଗ୍ରୁଡ ସେ ପାଇଛି ଉପଯୁକ୍ତ ପୁରସ୍କାର । ସେଥିରେ ସେ ଅନୁତପ୍ତ ହୋଇଛି । କୃଳାର ଭୂମିରେ ମନରେ ଅସିଛି ତାର ବିସ୍ମୟ ପରିବର୍ତ୍ତନ । ଏବେଣ ପ୍ରତିମା ଦେବୀ ତାଙ୍କ ଅପେକ୍ଷାରେ ବସି ବସିଲେ । ନନ୍ଦାର ଅଉ ଫେରନ୍ତି, କିନ୍ତୁ ଫେରନ୍ତି ତାଙ୍କ ହାତଲେଖା ଖଣ୍ଡିଏ ଚିଠି । ଖୋଲି ସେ ପଢ଼ିବାରେ ଲାଗିଲା । ମୁଣ୍ଡରେ ଶତବଜ୍ରଘାତ ହେବାର ସେ ଅନୁଭବ କଲେ । ଲେଖାଅଛି--

ପ୍ରତିମା ଦେବୀନ,

ବହୁଦିନ ପରେ ତୁମର ଏ ପୁରୁଣା ବନ୍ଧୁର ପତ୍ର ଖଣ୍ଡିକ ପାଇ ମନେ ପଡ଼ିବ ନାହିଁ । ତୁମକୁ ମୁଁ କେତେ ଭଲ ପାଉଛି । ଜୀବନର ସୁଖ ଦୁଃଖ ଆଶା ଓ ଅନନ୍ଦ ସବୁଥିରେ ତୁମେ ମୋର ଭାଗୀ ହୋଇ ଥିଲ । ମୁକ୍ତ ଆକାଶ ତଳେ ଆମେ ଦୁହେଁ ଗଢି ଦେଇଥିଲେ ସୁନାର ସଂସାର ।

ଏ ସବୁ ସମ୍ଭବ ନାହିଁ ହୃଦୟର ମୋର ପ୍ରକୃତ ବାସନା । ପ୍ରତିମା, ତୁମକୁ ଭଲ ପାଇବାଟା ମୋର ଜୀବନର ଗୋଟାଏ ଆକ୍‌ସିଡେଣ୍ଟ ।

ଅନ୍ତର ସହିତ ମୁଁ ତୁମକୁ ଭଲ ପାଇନି । ମୁ ହେ ବିବାହିତ । ତୁମର ପ୍ରେମରେ ଭୁଲିଅଛି ମୁଁ ଭୋଳରୁ ମୋର କୋଟିନିଧି ଟୁନିକୁ ହସାଇ ବସିଛୁ । ଜୀବନର ଗୋଟାଏ ଆକ୍‌ସିଡେଣ୍ଟ ଭଳି ତୁମ ସଙ୍ଗରେ ମୁଁ ବାନ୍ଧି ଦେଇଥିଲି ଅସ୍ଥାୟୀ ଖେଳଘର । ସେଥିରୁ ଅଧିକ କିଛି ନୁହେଁ ।

କ୍ଷମାଦେବ ପ୍ରତିମା । ଆଉ ଅଧିକ କିଛି ଲେଖିବାର ପ୍ରୟୋଜନ ନାହିଁ । ତୁମପାଖକୁ ମୋର ଏଇ ଶେଷ ଚିଠି । ଇତି ।

ତୁମର ପୂହୁଣା ବନ୍ଧୁ
ନରେନ୍ଦ୍ର କୁମାର

ନିହାର ଚାଲିଗଲାଠୁ ପ୍ରତିମା ମନରେ ଆଉ ଶାନ୍ତି ନାହିଁ । ଦିନ ଗୁଡ଼ାକ ଲମ୍ବା ନିରସ ଜଣାପଡ଼େ । ନିହାର ଦୁଇଦିନ ପାଇଁ ଯାଇ ଆଉ ଫେରିଲା ନାହିଁ । ଦୁର୍ଘଟନାର ଆଶଙ୍କା ମନେକରି ମନଟା ତାର ଗୋଟେଇ ଘାଣ୍ଟି ହେଉଥାଏ । ମାତ୍ର ଚିଠିଟା ପାଇଁ ସେ ସମସ୍ତ କଥା ବୁଝି ପାରିଲା ।

ନିହାର ଯେ ତାକୁ ପ୍ରତାରଣା କରିଛି । କେତେ ବିଶ୍ୱାସ ଘାତକ ସେ । ଚିରଦିନ ପାଇଁ ବୁକୁରେ ତାର ଛୁରୀ ମାରିଦେଇ ଚାଲିଯାଇଛି ।

ଚିଠିଟା ଥରେ ପଢ଼ି ସେ ବିଶ୍ୱାସ କରି ପାରିଲାନି ତାହ ନିହାରର ହାତଲେଖା ବୋଲି । ଯେଉଁ ତାକୁ ଏତେ ନିଜର କ ନେଇ ପାରିଥିଲା । ସେ ପୁଣି କିନା କାରଣରେ ତାକୁ ମୁହୂର୍ତ୍ତ ମଧ୍ୟରେ ପର କରିଦେବା ଅସମ୍ଭବ ।

ନିହାର ଯେ ବିବାହିତ । ବିବାହିତ ହୋଇ ସେ ପୁଣି ତାକୁ
ପଥରେ ବିବାହ କରିଛି । ବୁଝିବାଠୁ ତାର ଚିନ୍ତା ହୋଇଗଲା । ମନେ
ମନେ ଠିକ୍ କରି ନେଲା ନିହାର ପାଖକୁ ଯାଇ ତାକୁ ବେଶ ଦିପଦ
ଶୁଣାଇ ଆସିବ । କିନ୍ତୁ ସେ ଯେ ଉପାୟ ଶୂନ୍ୟ ।

କିପରିଭାବରେ ସେ ପୁଣି ନିହାର ପାଖକୁ ଫେରିଯିବ—ଯେଉଁ
ଜୀବନକୁ ତାର ମାଟି କରି ଦେଇ ଚାଲି ଯାଇଛି ।

ନିହାର କେଡ଼େ ବିଶ୍ୱାସ ଘାତକ ପ୍ରକୃତିର । ବ୍ୟବସାୟର
ହର୍ଦ୍ଦିକ ମୁଦ୍ରା ସେ ଅଗରୁ ଆତ୍ମସାତ କରି ଦେଇ ଗୋଟାଏ ମସ୍ତବଡ଼
ପ୍ଲାନ ଠିକ୍ କରି ନେଇ ଥିଲା । ପ୍ଲାନଟା ଅବଶ୍ୟ ତାର ମନଗଢ଼ା
ନୁହେଁ ।

ଟେଲିଗ୍ରାମ ପାଇବାର କେତେଦିନ ଆଗରୁ ସେ ଠିକ୍ କରି
ନେଇ ଯାଇଥିଲା ଯେ ପ୍ରତିମାର ସମୁଦାୟ ଅର୍ଥ ଆତ୍ମସାତ୍ କରି
ତାକୁ ଚମ୍ପଟ ଦେଇ ପଳାୟନ କରିବ । ପ୍ରତିମା ଏକଜାରଜ ସନ୍ତାନ
ବୋଲି ଶୁଣିବା ଦିନଠାରୁ ତା ପ୍ରତି ନିହାରର ପ୍ରେମ କମି ଯାଇଥିଲା ।

ପ୍ରତିମାର ମାଆ ନିର୍ମଳା ଜଣେ ସାମାନ୍ୟ ବେଶ୍ୟା । ସେ ଦୀର୍ଘ
ପ୍ରଦେଶ ବର୍ଷ ପର୍ଯ୍ୟନ୍ତ ଅବିବାହିତା ଥିଲେ । ପିତାମାତାଙ୍କ ଅସମ୍ମତି
କ୍ରମେ ସେ ସାମାନ୍ୟ ନର୍ସ ଜୀବନକୁ ପସନ୍ଦ କରି ସେଥିରେ ପଶିଲେ
ଅବିବାହିତ ଜୀବନରେ ଯେତେବେଳେ ତାଙ୍କର ଗାର୍ଭ ସଞ୍ଚାର
ହେଲା ପିତାମାତା ବଡ଼ ଚିନ୍ତାରେ ପଡ଼ିଲେ । ସେହି ଦିନଠୁ
ପ୍ରମୋଦ କୁମାରଙ୍କୁ ସେ ନିଜର ପତିରୂପେ ଗ୍ରହଣ କରି ନେଲେ ।

ନିର୍ମଳା ଦେବୀ ଏହିପରି ଅସତ୍ ଉପାୟରେ ଯେ ଏତେଗୁଡ଼ାଏ
ଟଙ୍କା ବ୍ୟାଙ୍କରେ ଜମା କରି ଦେଇଥିଲେ । ଏଇଥି ପାଇଁ ପ୍ରତିମାର
ବିବାହ ବିଷୟରେ ନିର୍ମଳା ଦେବୀ ଏତେ ଚଞ୍ଚଳ ନିଜର ସମ୍ମତି
ପ୍ରକାଶ କଲେ ।

ଏକଥା ନିହାରଙ୍କୁ ଜଣା ନଥିଲା । ଏ ସବୁ କଥା ନିହାର ଶୁଣିଛନ୍ତି ବଡ ବିସ୍ମିତ ହୁଅନ୍ତି । ଶୁଣିବା ଦିନଠୁ ପ୍ରତିମାଠାରେ ଆଉ ତାର ଲୋଭ ନାହିଁ । ଯେ କୌଣସି ଉପାୟରେ ସମୁଦାୟ ଟଙ୍କା ଆତ୍ମସାତ୍ କରି ପଳାୟନ କରିବା ପ୍ଲାନ୍ ମଧ୍ୟ ସେ କରି ସାରିଥିଲା । ଏଇଥିରେ ତାକୁ ବିଶେଷ ସାହାଯ୍ୟ ଦେଉଛନ୍ତି ରଞ୍ଜନ । ଅବଶ୍ୟ ସେଥିରେ ତାଙ୍କର ପଠଅଷ୍ଟ ଭାଗ ଥିଲା ।

ନିହାର ମଧ୍ୟ ବେଶ୍ ବୁଝିଲା । ଘର ଛାଡ଼ିବା ଦିନଠାରୁ ସେ ତାର ପ୍ରକୃତ ନାମ ନରେନ୍ କୁମାର ସର୍ତ୍ତ ପରିବର୍ତ୍ତିରେ ନିଜକୁ ପରିଚିତ କରି ନେଇଛନ୍ତି ନିହାର ରଞ୍ଜନ ଦାସ ବୋଲି । ପ୍ରତିମା ଦେବୀ ନିହାର ବିରୁଦ୍ଧରେ କିଛି ଭାଙ୍ଗି କଲାପ କରିବା ମଧ୍ୟ ଅସଙ୍ଗତ ଏହିପରି ନାନାକଥା ଭାବି ସେ ନିରସ୍ତ ହୋଇ ରହିଲେ ।

ନିହାର ଗଲାଦିନଠୁ ହୋଟେଲଟି ଭାଙ୍ଗି ପଡ଼ିଲା । ସମସ୍ତେ ସୁବିଧା ଦେଖି ନିଜ ନିଜ ବାଟରେ ପଳାଏ ଲେଖାଏ ମାର ଭୁଲି ହୋଇ ରହିଲେ । ପ୍ରତିମାର ଜୀବନରେ ଏକ ମହାନ୍ ଶିକ୍ଷା ମିଳିଲା ।

ବୃଦ୍ଧା ନିର୍ମଳ ଦେବୀଙ୍କର କିଛିଦିନ ପରେ ମୃତ୍ୟୁ ଘଟିଲା । ମାଙ୍କର କାଳ ହେବା ଦିନଠୁ ପ୍ରତିମାର ଘରଦ୍ୱାର ଶ୍ମଶାନରେ ପରିଣତ ହେଲା ଏତେବଡ଼ ଘରଟାରେ ଜଣେ ମଣିଷ । ଜୀବନରେ ତାର ଆହା କରିବାକୁ କେହି ନାହିଁ । ଅତୀତର ପୂର୍ବ ଛବି ଆଖି ଆଗରେ ନାଚି ଉଠିଲେ ଆଖିରୁ ତାର ଅଶ୍ରୁ ଗଡ଼ିପଡ଼େ ।

ମା ଚାଲିଗଲା ଦିନଠାରୁ ପ୍ରତିମାକୁ ସଂସାରଟା ଅନ୍ଧାର ଜଣା ପଡ଼ିଲା । ମାଙ୍କୁ ଝୁରି ଝୁରି ସେ କଣ୍ଟା ହୋଇଗଲା ।

ସେ ମନେ ମନେ ଭାବିଲା ଜୀବନଟା କଅଣ ଏତେ ଦୁଃଖମୟ ଭଗବାନ କଅଣ ଏତେ ନିଷ୍ଠୁର ।

କାନ୍ଦି କାନ୍ଦି ବକ୍ଷ ତାର ଭିଜିଯାଏ । ସମସ୍ତ ସମୟରେ ତାହାର
...ର ରୂପଛଟା ଆଖି ଆଗରେ ନାଚି ଉଠେ । ମନେହୁଏ ଯେପରି
...ତାର ବନ୍ଧୁଜନର ବିରହ ବେଦନା ସହି ନ ପାରି ଚାଲି ଆସିଛି
...ତମା ପାଖକୁ । ଅତି ଆଦରରେ ମୁହଁକୁ ମୁହଁ ଲଗାଇ ଥିର ଥିର
...କୁ ପଚାରୁଛି ପ୍ରିୟେ - - - ।

କ୍ଷଣିକ ପାଇଁ ବୋଧେ ତାର ଶାନ୍ତ ହୁଏ । ପୁଣି ଆଖି ଖୋଲି
...ଦେଖେ ଚାରିଆଡ଼ ଶୂନ୍ୟ । ଯାହାର ସେ ଚିରଦିନ ପାଇଁ ତାକୁ
...ଛାଡ଼ି ଦେଇ ଚାଲି ଯାଇଛି । ତାକୁ ପ୍ରତାରଣା କରି ଚାଲି ଯାଇଥିବାର
ଉପଯୁକ୍ତ ପରିଣାମ ସେ ନିଶ୍ଚୟ ଭୋଗିବ । ତାହାର ବିଷୟ ଚିନ୍ତା
କରିବା ତା ପକ୍ଷରେ ଅନାବଶ୍ୟକ ।

ଏହିପରି ନାନା କଥା ଆଲୋଚନା କରି ପ୍ରତିମା ଭାବେ ସେ
...ଏବେ ଗୋଟିଏ ଅନୁଷ୍ଠାନ ଆରମ୍ଭ କରିବ ଯା ଫଳରେ କି ଦୁନିଆ
...କୁ ଭଲଭାବରେ ଚିହ୍ନି ପାରିବ । ମାନବ ସମାଜକୁ ସେ
...ଦେଖେଇ ଦେଇ ପାରେ ସ୍ତ୍ରୀ କଦାପି ପୁରୁଷର ପୁଚ୍ଛ ଧାରୀ ନୁହେଁ ।
...ମଙ୍ଗଳ ହିତ ସାଧନ ପାଇଁ ତାର ଯଥେଷ୍ଟ ଶକ୍ତି ଅଛି ।

ଦୁନିଆକୁ ସେ ଦେଖେଇ ଦେଇ ପାରିବ—ସ୍ତ୍ରୀ ଜାତି ଏତେ
...ଳ ନୁହେଁ । ପୁରୁଷର ଅର୍ଦ୍ଧାଙ୍ଗିନୀ ହୋଇ ଚିରଦିନ ରହି ପାରିବ
...ହିଁ । ପୁରୁଷ ସମକକ୍ଷ ହେବାପାଇଁ ଅଛି ତାର ଯଥେଷ୍ଟ ବୁଦ୍ଧି ଓ
...ି ।

X X X X

ଏହାପରେ ପ୍ରତିମା ଆରମ୍ଭ କରିଦେଲା ଗୋଟିଏ ବିଧବା ଶ୍ରମ ।
...ର ସାମାନ୍ୟ ଅର୍ଥରେ ସେ ନିଜଘରେ ଆଶ୍ରମ ଖୋଲିଲା । ପ୍ରଥମେ
...ର ମୁଷ୍ଟିମେୟ ଅନାଥା ବିଧବାଙ୍କୁ ନେଇ କାର୍ଯ୍ୟ ଆରମ୍ଭ
...ଗଲା । ପ୍ରତିମା ସେ ସବୁର ପରିଚାଳନା । ଭାର ନିଜେ ବହନ

କରଛନ୍ତି । ପ୍ରମୋଦ କୁଟୀରର ନାମ ବଦଳାଇ 'ନିର୍ମଳା ଦେବୀ ବିଧବାଶ୍ରମ' ରଖାଗଲା । କ୍ରମେ କ୍ରମେ ଅସଂଖ୍ୟ ବିଧବା ସେଠାରେ ଯୋଗଦାନ କଲେ । ସେଠାରେ ସେମାନଙ୍କୁ ହାତକାମ ସିଲେଇ ଓ ଅନ୍ୟାନ୍ୟ ନାନା ପ୍ରକାର ଶିକ୍ଷା ଦିଆଗଲା ।

ଅଶିକ୍ଷିତା ବିଧବାମାନଙ୍କୁ ଶିକ୍ଷା ଦେବାପାଇଁ ଗୋଟିଏ ନୈଶ ବିଦ୍ୟାଳୟ ସ୍ଥାପିତ ହେଲା । ସ୍ଥାନର କିଛି ଅଭାବ ନ ଥିଲା ପ୍ରତିମା ଏତେଗୁଡ଼ିଏ ନିବନ୍ଧୁ ଅନାଥଙ୍କ ପାଇଁ ତାର ପ୍ରକାଣ୍ଡ ଦୋମହଲା ଘର ଖଣ୍ଡିକ ଛାଡ଼ିଦେଇଛନ୍ତି । ବିଭିନ୍ନ ପ୍ରକାର ଶିଳ୍ପକାମରୁ ଶହ ଶହ ଟଙ୍କା ଆମଦାନୀ ହୁଏ । ତା ଛଡ଼ା ମୂଳଧନ ପାଇଁ ପ୍ରଥମେ ପ୍ରତିମା ଯଥେଷ୍ଟ ସାହାଯ୍ୟ କରିଥିଲା ।

ଦିନୁଦିନ ନିର୍ମଳା ଦେବୀ ବିଧବାଶ୍ରମର ସୁନାମ ଚାରିଆଡ଼େ ବ୍ୟାପିଗଲା । ଅଳ୍ପ କେତୋଟି ବର୍ଷ ଭିତରେ ଦେଶ ବିଦେଶରେ ବହୁ ସୁଖ୍ୟାତି ଅର୍ଜନ କରିପାରିଲେ ପ୍ରତିମା ଦେବୀ । ଲାଟ ଗଭର୍ଣ୍ଣର ପ୍ରଭୃତି ବହୁ ସରକାରୀ ଓ ବେସରକାରୀ ବ୍ୟକ୍ତି ଆଶ୍ରମ ପରିଦର୍ଶନ କରି ତାର ଭୂରି ପ୍ରଶଂସା କଲେ । ଆଶ୍ରମ ପ୍ରତିଷ୍ଠାତ୍ରୀ ପ୍ରତିମା ଦେବୀଙ୍କ ପାଖକୁ ନାନା ଆଡୁ ନାନା ପ୍ରଶଂସା ପତ୍ର ଆସେ ।

ଏହି ମହତ୍ ଅନୁଷ୍ଠାନ ପ୍ରତି କ୍ରମେ ସରକାରଙ୍କ ଶୁଭଦୃଷ୍ଟି ପଡ଼ିଲା । ଏବଂ ମାସିକ ସାହାଯ୍ୟ ମଧ୍ୟ ମିଳିଲା । ଅନୁଷ୍ଠାନଟିର ଉତ୍ତରୋତ୍ତର ଉନ୍ନତି ଦେଖି ପ୍ରଦେଶ ବାହାରୁ ମଧ୍ୟ ବହୁ ଛାତ୍ରୀ ଆସିଲେ । ପ୍ରତ୍ୟେକଙ୍କ ଶିକ୍ଷା ଶେଷ ପରେ ସେମାନଙ୍କୁ ଉପଯୁକ୍ତ କାର୍ଯ୍ୟ ଯୋଗାଇ ଦିଆଯାଏ ।

ଦୁଃସ୍ଥ ଓ ନିରାଶ୍ରୟଙ୍କ ସେବା ସ୍ୱେଚ୍ଛାସେବକତା ପ୍ରଭୃତି ଗଠନମୂଳକ ଓ ସମାଜ କଲ୍ୟାଣୋପଯୋଗୀ କାର୍ଯ୍ୟ ସେମାନଙ୍କ ଜୀବନର ମହତ୍ ଓ ଉଚ୍ଚ ଆଦର୍ଶ ଥିଲା ।

ପ୍ରତିମା ଏ ସମସ୍ତ କାର୍ଯ୍ୟରେ ତାର ଅତୀତକୁ ଭୁଲିଗଲା । ଧନାଢ୍ୟ ସଂସାରର ସୁଖ ସମ୍ଭୋଗ ଜୀବନକୁ ତାର ଆଉ ଆକର୍ଷଣ କରି ପାରିଲା ନାହିଁ । ଏ ବିଷୟ ନେଇ ଶାହାର ଠାରୁ ସେ ଉପଯୁକ୍ତ ଶିକ୍ଷା ପାଇଲା । ଖବର କାଗଜ ମାନଙ୍କରୁ ପ୍ରତିମାର ଏହି ମହତ୍ ଉଦ୍ଦେଶ୍ୟ ଓ ଉନ୍ନତିର ଖବର ପାଇ ଶାହାର ମନେମନେ ଈର୍ଷାନ୍ୱିତ ହୋଇ ଉଠେ । କେବେ ପୁଣି ସେ ଚାଲି ଯାନ୍ତି ପ୍ରତିମା ପାଖକୁ । ଗୋଡ଼ତଳେ ପଡ଼ି ତାଠାରୁ କ୍ଷମା ମାଗି ଆସନ୍ତି । ପର ମୁହୂର୍ତ୍ତରେ ପୁଣି ଭାବନା ଆସେ ସେ କଅଣ ଏତେ ନୀଚ ? ପ୍ରତିମା କଅଣ ସବୁ କଥାକୁ ଆଉ ମନେ ରଖିଥିବ ।

ବର୍ତ୍ତମାନ ସଂସାରକୁ ଦେଖି ସେ ସବୁ ଅତୀତ କଥା କୁଆଡ଼େ ଉଭେଇ ଯାଏ । ସ୍ୱଜନ, ବନ୍ଧୁ, ସ୍ତ୍ରୀ ଓ ପୁତ୍ର କନ୍ୟା ପ୍ରଭୃତିଙ୍କ ଆଦର ସ୍ନେହରେ ସେ ସବୁ ଭୁଲିଯାଏ ।

+ + + +

ବମ୍ବେରୁ ଆସିଲା ଦିନଠାରୁ ଶାହାର ମନରେ ବହୁତ ପରିବର୍ତ୍ତନ ଆସି ଯାଇଛି । ସେ ଆତ୍ମୀୟ ସ୍ୱଜନ ସମସ୍ତଙ୍କୁ ଅତି ନିଜର କରି ନେଇ ପାରିଛି । ପ୍ରତିମାର କଥା ଅନେକ ସମୟରେ ତାର ମନେ ପଡ଼ିଯାଏ । ମାତ୍ର ସେ ସବୁ ମୂହୁର୍ତ୍ତକେ ଉଭେଇ ଯାଏ । ହେଲେ ଜୀବନ ସଙ୍ଗେ ଆଉ ତାର ସଂଲଗ୍ନତ ନାହିଁ ।

ଜୀବନ ମଧ୍ୟ ଶାହାରକୁ ଅନ୍ତର ଖୋଲି ଭଲ ପାଉଥିଲା । ଜୀବନରେ ସ୍ୱାମୀ ଥିଲା ତାର ଏକ ମାତ୍ର ସମ୍ବଳ । ମାଙ୍କର ଉପେକ୍ଷା କଥା ପଦକ ସେ ବେଦର ସାର କରି ରଖିଥିଲା ।

ମା ମୃତ୍ୟୁ ଶଯ୍ୟାରେ ପଡ଼ିରହିଥିଲା ସମୟରେ ଶାହାର ଓ ଜୀବନ ତାଙ୍କୁ ଦେଖିବା ପାଇଁ ଗ୍ରାମକୁ ଯାଇଥିଲେ । ସେହି ସମୟର ଦୃଶ୍ୟ ତାର ମନେ ପଡ଼ିଯାଏ ।

ମା କାଞ୍ଚନର ହାତକୁ ନିଜ ବକ୍ଷ ଉପରକୁ ଟାଣି ନେଇ କହୁଥିଲେ "କାଞ୍ଚି ନରେନ୍ ତୋ'ର ଜୀବନର ଏକମାତ୍ର ସମ୍ବଳ । ସେହି ତୋର ଆଶା ଏବଂ ଭରସା । ତାଙ୍କୁ ଯେପରି ଜୀବନରେ କିଛି ବାଧା ନ ଦେଉ ଏହି ମୋର ଆଶା ଓ ଅନୁରୋଧ ।

ମା ଙ୍କର ଏ ଅନୁରୋଧ ଶୁଣି ସେ କାନ୍ଦି ପକାଇଥିଲା । ନିହାର ବାବୁଙ୍କ ଚକ୍ଷୁରୁ ମଧ୍ୟ ଦୁଇଧାର ଲୁହ ଗଡ଼ି ପଡ଼ିଲା । ଏଇ କଥା ନେଇ କାଞ୍ଚନ ସବୁବେଳେ ସ୍ୱାମୀଙ୍କୁ ଦେବତା ତୁଲ୍ୟ ଦେଖିଛି । ସବୁ ମୁଣ୍ଡ ପତେଇ ସହି ନେଇଛି ମଧ୍ୟ । ସ୍ୱାମୀ ଯେତେବେଳେ ଚାଲିଯାଇ ବମ୍ବେରେ ଦୀର୍ଘ ତିନିବର୍ଷ ରହିଲେ ତାଙ୍କପାଇଁ ସେ କେତେ ଧୈର୍ଯ୍ୟ ଧରି ରହିଲା । ସ୍ୱାମୀ ଚାଲିଯାଇଥିଲେ ମଧ୍ୟ ପାଖରେ ତାଙ୍କର ଛୁଆ ଦୁଇଟା ଥିଲେ । ସେମାନଙ୍କୁ ଦେଖି କାଞ୍ଚନ ଜୀବନ ଧାରଣ କରି ରହିଲା ।

ନିହାର ଘରକୁ ଫେରିବା ପରେ ସେମାନଙ୍କ ମଧ୍ୟରେ ସୃଷ୍ଟି ହୋଇଗଲା ଏକ ବଡ଼ ପ୍ରାଚୀର । ଯା ଭିତରେ ପ୍ରତିମାର ଚିଠି ଖଣ୍ଡିଏ ପାଇ କାଞ୍ଚନ ସମ୍ପ୍ରଦାୟ ରହସ୍ୟଟା ବୁଝି ନେଇ ପାରିଥିଲା ।

ନିର୍ମଳାଦେବୀ ବିଧବାଶ୍ରମ ବମ୍ବେ

ନରେନ୍ ବାବୁ

ତୁମେ ଏତେ ନିର୍ଲଜ୍ଜ । ମଣିଷ ଜାତିଟା ଏତେ ବିଶ୍ୱାସ ଘାତକ । ବିଶ୍ୱାସରେ ବିଷଦେଇ ଜୀବନକୁ ମୋର ମାଟି କରିଦେଇ ତୁମେ ଖସି ପଳାଇ ଯାଇଛ । ଏତେ ଭୀରୁ ତୁମେ । ମୁଁ ତ ତୁମକୁ ପ୍ରଥମେ ଚାହିଁ ନ ଥିଲି ବିବାହ କରିବାକୁ ତୁମେହିଁ ପ୍ରଥମେ ଏହି ପ୍ରସ୍ତାବ ଆଗତ କରିଥିଲ ସରଳ ଅନ୍ତରରେ ତୁମକୁ ମୁଁ ବିଶ୍ୱାସ କଲି ବୋଲି ମୋତେ ତୁମେ ଆଜି ଏ ଶିକ୍ଷା ଦେଇଛ । କ୍ଷଣିକ ପାଇଁ ଛଳନା ଦେଖାଇ ସବୁ ମୋର ଆତ୍ମସାତ୍ କରିଛ ।

ଛି ! ଧିକ୍ ତୁମକୁ । ନରେନ୍ ବାବୁ ଭବିଷ୍ୟତ ତୁମର କଦାପି ଉଜ୍ଜ୍ୱଳ ନୁହେଁ । ଏହି ଅଭାଗିନୀ ସରଳା ଅବଳାର ପ୍ରତ୍ୟେକ ଅଶ୍ରୁ କଣାରେ ତୁମର ଭବିଷ୍ୟତ ଅନ୍ଧକାର ହୋଇ ଉଠିବ । ଭଗବାନ ତୁମକୁ ଉଚିତ ଶାସ୍ତି ଦେବେ ଏ କଥା ତୁମେ ପଛକେ ବୁଝିପାରିବ ମୋର ପ୍ରତ୍ୟେକ ନିଶ୍ୱାସରେ ତୁମପରି ଶତସହସ୍ର ନାହାରୀ ଜଳିପୋଡ଼ି ମରିବେ ।

ତୁମେ ମୋତେ ଛାଡ଼ି ଚାଲି ଯାଇଛ । ଯା ମୋ ପକ୍ଷରେ କଳଙ୍କ ନୁହେ । ଏହି କଳଙ୍କ ଚିରଦିନ ତୁମ ଠାରେ ଲାଗି ରହିବ । ଗୋଟିଏ ଅବଳାକୁ ମିଛରେ ଭୁଲାଇ ତାର ଜୀବନକୁ ଏମା ବେଳରେ ନଷ୍ଟ କରି ଦେଇଛ ତୁମେ—ଏ କଥା ଚିର- ଅଶାନ୍ତି ବହ୍ନିରେ ହୃଦୟକୁ ତୁମର ଦଗ୍ଧ କରାଇବ । ନିଜର ଭୁଲ ନିଜେ ବୁଝି ପାରିବ ।

ତୁମଠାରେ ମୋର ଆଉ ଆବଶ୍ୟକ ନାହିଁ । ଇତି ।

ଶ୍ରୀମତୀ ପ୍ରତିମା ମଞ୍ଜରୀ ବାନାର୍ଜୀ
ପରିତ୍ୟକ୍ତ ବିଧବାଶ୍ରମ

ତାର ପିଅନ ଠାରୁ ଚିଠିଟା ରଖି ନେଲେ ଜୀବନ । ନାହାର ଘରେ ନାହାନ୍ତି । ଦୁଇଦିନ ହେଲା କନ୍ଥା ପଟେଇ ଗ୍ରାମରେ ବୁଲି ଯାଇଛନ୍ତି । ଚିଠି ଉପରେ ବମ୍ବେ ସହର ମୋହର ପଡ଼ିଥିବାର ଦେଖି ଜୀବନର ମନରେ ସନ୍ଦେହ ଜାତ ହେଲା । ସେ ଭାବିଲା ନାହାରର ଭଉଣୀର ବିଷୟ ନେଇ କୌଣସି ଜରୁରୀ କାଗଜ ପତ୍ର ହୋଇ ଥାଇ ପାରେ । ଚିଠିଟା ପଢ଼ି ଜୀବନ ଅବାକ ହୋଇ ରହିଲେ । ସେହି ଦିନଠୁ ସେ ଜାଣିପାରିଲେ ନାହାର କେତେ ଅବିଶ୍ୱାସୀ ।

ସାମାନ୍ୟ ସ୍ତ୍ରୀଟିର ମୋହରେ ସେ ବିବାହିତା ସ୍ତ୍ରୀକୁ ତାର ଛାଡ଼ି ରହି ପାରିଥିଲେ—ବର୍ଷ ବର୍ଷ ଧରି । ଗୃହିଣୀର ଛଳନା ଦେଖାଇ ସମସ୍ତଙ୍କ ଆଖିରେ ସେ ଧୂଳି ପକାଇ ଦେଉଥିଲେ । ପ୍ରତିମା ପରି ବେଶ୍ୟା

ସନ୍ତାନର ସଞ୍ଚିତ ଅର୍ଥର କେତେକାଂଶ ଆଣି ସେ ତାର ଗୃହର ଜୀବନର ପରିଚୟ ଦେଇ ପାରନ୍ତି । କିନ୍ତୁ ତାହା ଯେ ସଂପୂର୍ଣ୍ଣ ପ୍ରତାରଣା ଛଡ଼ା ଆଉ କିଛି ନୁହେ ।

ଏହି କାରଣରୁ ନିହାର ପ୍ରତି କାଞ୍ଚନର ସ୍ନେହ ଓ ଭକ୍ତି କମି ଆସିଲା । ମନେ ମନେ ଭାବିଲା ନିହାର ଅଗୋଚରେ ସମସ୍ତ କଥା ଖୋଲି କହି ଦେବ । ଏଣେ ନିହାର ମଧ୍ୟ ଅନୁଭବ କରି ପାରିଲା । କାଞ୍ଚନ ଦେବୀଙ୍କ ମନରେ ବିରସତ ଓ ବିଷାଦ ଭାବ । ସେ ପୂର୍ବପରି ଆଉ ତାଙ୍କ ସହିତ ହସି କଥାପଦେ କହୁନାହାନ୍ତି । ସ୍ତ୍ରୀ ତାର ଗୁପ୍ତ ପ୍ରଣୟ କଥା ଜାଣେ—ଏ ବିଷୟ ନିହାର କୁ ଅଜଣା । ତେଣୁ କାଞ୍ଚନର ବିରସତାର କାରଣ ସେ ବୁଝି ପାରନ୍ତି ନାହିଁ ।

ନିହାର ବହୁତ ଚେଷ୍ଟା କଲା । କିନ୍ତୁ କୌଣସିଥିରେ କାଞ୍ଚନର ମନରେ ପରିବର୍ତ୍ତନ ଆଣି ପାରିଲା ନାହିଁ । ଏ ଯେ ସାମାନ୍ୟ କଥା ନୁହେ--ଜୀବନର ଏକ କଳଙ୍କ ଅଧ୍ୟାୟ ।

କାଞ୍ଚନ ମଧ୍ୟ ଚିଠିଟା ଆଉ ନିହାରକୁ ଦେଇନି । ଅତି ଯତ୍ନରେ ସେ ତାହା ସାଇତି ରଖିଲା ତାର ହାତ ବାକ୍ସରେ । କାଞ୍ଚନ ଏଥି ପୂର୍ବରୁ କେବେ ନିହାରର ଗୁପ୍ତ ପ୍ରଣୟର ସନ୍ଧାନ କିଛି ପାଇ ନଥିଲା । ସେ ଭାବିଥିଲା ସ୍ୱାମୀ ତାର ସରଳ, ସୁଚରିତ୍ର ଏବଂ ସଚ୍ଚୋଟ । କିନ୍ତୁ ପ୍ରତିମାର ଚିଠିଖଣ୍ଡିକ ସମସ୍ତ କଥା ଖୋଲିଦେଲା । ଏଥିପାଇଁ ମନରେ ତାର ବିଷାଦ କାଳିମାର ଚିହ୍ନ ।

ଏଣେ ନିହାର ଭାବେ ଯେ ତାର ଦୀର୍ଘ ଅନୁପସ୍ଥିତି ପାଇଁ କାଞ୍ଚନ ମନେ ମନେ ବିରକ୍ତ ହୋଇ ପଡ଼ିଛନ୍ତି । ତାଙ୍କର ମନକୁ ବଦଳାଇ ବାରେ ଶତଚେଷ୍ଟା କଲେ ମଧ୍ୟ ସେ ତାଙ୍କ ଉପର ମନକୁ ଭଲ ପାଇଲେ । ମାତ୍ର କାଞ୍ଚନଦେବୀଙ୍କ ହୃଦୟରେ ଟିକିଏ ମଳିନତା

…ି ରହିଲା ଯାହାଙ୍କ ଉଭୟଙ୍କ ଭବିଷ୍ୟତ ଜୀବନରେ ସୃଷ୍ଟି କରିଛି …ଶାନ୍ତି ଏବଂ କଷ୍ଟମୟ ଫଳ ।

× × × ×

ଦିନେ ସନ୍ଧ୍ୟା ସମୟରେ ନିହାର ତା'ର ପୂର୍ବ ଅଭ୍ୟାସ ଅନୁ… …ନେପକାଇ କଥିତ ଗୋଟାଏ ଚିତ୍ରାଙ୍କନ ଆରମ୍ଭ କରିଥିଲା । କାଞ୍ଚନ …ମ୍ପୀ ଯେତେବେଳେ ତାର ଧ୍ୟାନ ଶେଷ କରି ଅସନ୍ତୁ ନିହାର ତାଙ୍କୁ …କୁ ଯାଇ କହିଲା

—କାଞ୍ଚନ ଦେଖ ଏ ଯେ ଭ୍ରମର ଛବି । ମୁଁ ନିଜେ ଅଙ୍କିଛି । …ଯୁବକ କି ସୁନ୍ଦର ରୂପ ଭ୍ରମର ।

କାଞ୍ଚନ ହଠାତ୍ ବିରକ୍ତି ସୂଚକ ଗଳାରେ ଉତ୍ତର ଦେଲା

—ଓ ଏ ସେ ଗୁଡ଼ାକ ଦେଖିବା ମୋର ଅବଶ୍ୟକ ନାହିଁ ।

… ସମୟ ପରେ ହୃଦୟର ସବୁ ସମ୍ବଳ ନେଇ କାଞ୍ଚନ ପୁଣି ଆରମ୍ଭ …,

—ମୁଁ ଏ ସବୁ ଦେଖିବାର ଉପଯୁକ୍ତ ପାତ୍ର ନୁହେଁ । ଯାଉନା …ର ପ୍ରାଣର ପ୍ରତିମାକୁ ପାଖରେ ବସାଇ ଯାହା ଇଚ୍ଛା ତାହା …ଣାଇବ ।

ନିହାର ହଠାତ୍ ନୀରବ ରହିଲା । ପୁଣି ଆରମ୍ଭ କଲା ପ୍ରତିମା … ସେ କିଏ ଜାଣେନା । ଏ ଯେ ତା ଆଗରେ ଏକ ସଂପୂର୍ଣ୍ଣ ନୂଆ …ମ ।

ପୁଣି କାଞ୍ଚନ କହିଲା—

—ସଂପୂର୍ଣ୍ଣ ଅପରିଚିତ ନୁହେଁ । ଯେଉଁ ସୁକୁମାରୀ ରୂପବତୀ …ତରୁଣୀ ଙ୍କ ସହିତ ତୁମେ ସୁନାର ନାଆ ବାନ୍ଧି ଦେଇ ଥିଲ । ଯାର …ଖ ର ବନ୍ଧିରେ ତୁମର ଶତସହସ୍ର ଯୁବକ ଲାଳପୋଡ଼ି ମରିବେ ।

—ଚୁପ୍ କର କାଞ୍ଚନ ତୁମେ ଯେ ସାମାନ୍ୟ ସ୍ତ୍ରୀ ଏପ
ଅସଙ୍ଗତ ଭାବରେ କଥାବାର୍ତ୍ତା କରିବା ତୁମର ଅଧିକାର ନାହିଁ । ଅ
ସ୍ୱରରେ ଗର୍ଜ୍ଜନ କରି ଉଠିଲା ନିହାର ।

କାଞ୍ଚନତାପରେ ଚାଲିଆସିଲା ସେଠାରୁ ଅବଶ୍ୟ ସେ ସ୍ୱାମୀ
ଉଗ୍ରମୂର୍ତ୍ତି ଦେଖି ଟିକିଏ ଶଙ୍କିଗଲା ।

ତା ପୂର୍ବରୁ ସେ ଚକ୍ଷୁ ପକାଇଥିଲା —

ନା ଏ ଯେ ପ୍ରକୃତ ସତ୍ୟ ଘଟଣା । ଯଦି ଆମନ୍ତ୍ରଙ୍କ ଅନ୍ଦେଶ-
ମୁଁ ଆପଣଙ୍କ ବିରକ୍ତି ବୃଦ୍ଧି ପାଇଁ ଆପଣଙ୍କ ସଙ୍ଗେ ବୃଥା ଯୁକ୍ତି କରି
ଅନାବଶ୍ୟକ ।

ସେହି ମୁହୂର୍ତ୍ତରେ ଅତୀତର କେତେ ଛବି ଖେଳିଗଲା ନିହାର
ଆଖିଆଗରେ । ପ୍ରତିମାକୁ କାଞ୍ଚନ ଜାଣିଛି କିପରି । ହୃଦୟଟା ତ
ଆନ୍ଦୋଳିତ ହୋଇ ଉଠିଲା ।

ମନେମନେ ସେ ଭାବିଲା "ପ୍ରତିମା—ତାକୁ ମୁଁ—

ପରମୁହୂର୍ତ୍ତରେ ପୁଣି ମନରେ ତାର ପ୍ରଶ୍ନ ଉଠେ—
କିଏ ଅଭିଶପ୍ତ ? କିପରି ?—ନ—ନା—କଦାପି ନୁହେଁ ।

ସେହିଦିନ କାଞ୍ଚନର କଥା ଗୁଡ଼ିକ ନିହାର ବକ୍ଷରେ ତୀକ୍ଷ୍ଣ
ଛୁରିକା ବିଦ୍ଧ ହେଲା ପରି ଲାଗିଲା । ସେ ଭଲଭାବରେ ଜାଣେ ତା
ଗୁପ୍ତ ପ୍ରଣୟ କଥା କାହାରିକୁ ଅବିଦିତ ନୁହେଁ । ସେତ ପ୍ରତିମା
ପତ୍ର ଗୁଡ଼ିକ ସବୁ ଲୁଣ୍ଠାଇ ପୋଡ଼ି ଦେଇଥିଲା । ତାର ଗୁ
ପ୍ରଣୟ କଥା ଜାଣିବାର କିଛି ଉପାୟ ନଥିଲା । ହେଲେ କିପରି ଗ
ଗାଁରେ ସୃଷ୍ଟି ହୋଇଗଲାଣି ସେ ବିଷୟ ନିହାର କିଛି ବୁଝି ପାରି
ନାହିଁ ।

ନିହାରର ଏହି ପ୍ରେମ କଥା ନେଇ ଗାଁରେ ବସିଥାଏ ହାଟ
ଘରେ ଘରେ ଏହି କଥା ପ୍ରଚାର । କେହି କେହି ମଧ୍ୟ ନିହାର

ନର ମନୋମାଳିନ୍ୟ ନେଇ ଆଲୋଚନା କରନ୍ତି । କାଞ୍ଚନ
ନ୍ତଙ୍କର ପ୍ରଶଂସାପାତ୍ରୀ ହୁଏ । ସମସ୍ତେ ତାଙ୍କୁ ଧନ୍ୟବାଦ ଦଅନ୍ତି
ଧୈର୍ଯ୍ୟ ଓ ଚରିତ୍ର ନିଷ୍ଠା ପାଇଁ ·

ଅନ୍ୟପକ୍ଷରେ ନିହାର ପାଏ ଲାଞ୍ଛନା ଓ ଅପବାଦ ।

ଗାଁର ସମବୟସ୍କା ଯୁବତୀମାନେ କଥାଛଳରେ କାଞ୍ଚନକୁ
ତ କହନ୍ତି । ମାତ୍ର ସେମାନଙ୍କ ଆଗରେ ସ୍ୱାମୀଙ୍କ ବିପକ୍ଷରେ ସେ
ଦ ହେଲେ କିଛି କହେନାହିଁ । ସ୍ୱାମୀଙ୍କୁ ବୃଥା ଦୋଷାରୋପ
ବା ଯେ ସ୍ତ୍ରୀର ଶକ୍ତି ବହିର୍ଗତ ।
ର ସେ ଅଧିକାର ନାହିଁ ।

ନିହାରର ଗୁପ୍ତ ଝଗଡ଼ା କଥା ପରସ୍ପର ଠାରୁ ଶୁଣିବାକୁ ପାଏ
। ଏ ସବୁ କାନଭଙ୍ଗା କଥାରେ ତାର ବିଶ୍ୱାସ ନାହିଁ । ଏହି
ନାନା ଯୁକ୍ତି ଦେଖାଇ ସେ ସ୍ୱାମୀଙ୍କ କଥାକୁ ସମର୍ଥନ କରିଥାଏ
ାରଣ ସ୍ତ୍ରୀ ପକ୍ଷରେ ଏତାଦୃଶ ଆଦର୍ଶ ଅସମ୍ଭବ ।

ନିହାର କାଞ୍ଚନର ଏହି ଉଚ୍ଚାଦର୍ଶ ଦେଖି ନିଜକୁ ବହୁତ ନିନ୍ଦା
। ସ୍ତ୍ରୀ ହୋଇ ସେ ଏହି ମହତ୍ ଆଦର୍ଶକୁ ସମାଜ ଆଗରେ
ସ୍ଥିତ କରି ପାରୁଛି । ପୁରୁଷ ହୋଇ ତାର ଏତିକି ଶକ୍ତି ନାହିଁ ।
ସ୍ତ୍ରୀ ଆଗରେ ସତ କଥାଟା ପ୍ରକାଶ କରିଦେବାକୁ ସେ ଏତେ
ଭୀତ ।

ଏହିପରି ନାନା କଥା ଭାବି ମନରେ ତାର ଆସିଲା ପରି
ବର୍ତ୍ତନ । ସେ ଅତୀତ ଘଟଣା ପାଇଁ ନିଜକୁ ବହୁତ ଧିକ୍କାର
। ଅନେକ ଦିନ ସେ ଭାବି ନେଇଛି ତାର ଏହି ଅପରାଧର
ଷ୍ଟିବ ନାହିଁ । କାଞ୍ଚନ ପାଖରେ ସେ ତାର ଦୋଷ ପାଇଁ କ୍ଷମା
ର୍ଥନା କରିବ । ତାହା କେବଳ ଜୀବନରେ ହେବ ଉପଯୁକ୍ତ
ଷ୍ଟିତ ।

ଏ ସମସ୍ତ ଅଶ୍ରାନ୍ତ ଦୁଃଖ ପାଇଁ ଏବେ ହଠାତ୍ ନିହାର ଗୁରୁ ଅନୁତପ୍ତ ହୋଇ ଉଠିଲା । ଅତୀତର ପୈଶାଚିକ କାଣ୍ଡ ପାଇଁ ହୃଦୟ ତାର କାନ୍ଦ ଉଠିଲା । ଅଲକ୍ଷିତ ଭାବରେ ଦୁଇ ଆଖିରୁ ତାର ଗଡ଼ି-ପଡ଼ିଲା ଦୁଇଧାର ଲୁହ ।

କାଞ୍ଚନ ମଧ୍ୟ ଲକ୍ଷ୍ୟ କରି ନେଇଛି ନିହାରର ଗଣ୍ଡ ଦେଶରେ ସେହି ଅଶ୍ରୁ କଣିକା । କାଞ୍ଚନ କଥା ଆରମ୍ଭ କରିବା ପୂର୍ବରୁ ନିହାର କହି ପକାଇଛି—

"କାଞ୍ଚନ, ବାସ୍ତବକ ମୁଁ ଅଭିଶପ୍ତ ··· ···

ତୁମେ କେବଳ ମୋର ଦୋ—

ଠିକ୍ ସେହି ମୁହୂର୍ତ୍ତରେ କାଞ୍ଚନ ତାଙ୍କୁ ବାଧାଦେଇ କହି ଉଠିଲା,

"ନା ନା ଅଭିଶପ୍ତ ନୁହେଁ ମୁକ୍ତ ।

ମୁକ୍ତ କିନ୍ତୁ କାଞ୍ଚନ ଏ ଯେ ଜୀବନର କମାର ଗୋଟାଏ ଆକ୍ସିଡେଣ୍ଟ ।

ସ ମା ପ୍ତ

Prnted by L. Nayak. at City Press. Jamshedpur.
1950.

ନିକଟରେ ଆତ୍ମ ପ୍ରକାଶ କରିବ —

## କଳଙ୍କିନୀ—[ ଉପନ୍ୟାସ ]

ଲେଖକ ଶ୍ରୀ ମହେଶ୍ୱର ମହାକୁଳ ବି, ଏ,

ଆମର ଏ ସମାଜ ଗଢା ହୋଇଛି କେତେ ଗୁଡ଼ିଏ କ୍ଷୁଦ୍ର ନୀତିକୁ ନେଇ । ଆକସ୍ମିକ ଭାବରେ ଏ ଦୁନିଆରେ ମନୁଷ୍ୟର ପରିବର୍ତ୍ତନ ଘଟେ । ମାତ୍ର ଜାଣିଶୁଣି ଅନେକ ସ୍‌ଖଳନକୁ ସ୍ୱାଗତ କରି ନେଇ ଥାନ୍ତି । ଏଇଥିରେ ଘଟେ ସେମାନଙ୍କ ଭାଗ୍ୟର ବିପର୍ଯ୍ୟୟ ଅଜ୍ଞାତ ଭବିଷ୍ୟତକୁ ବିଚାର ନକରି ଅନେକ ସମୟରେ ମାନବ ବର୍ତ୍ତମାନର ବିଳାସ ବ୍ୟସନରେ ଭାସି ଯାଏ ।

**ଏଥିର ଜ୍ୱଳନ୍ତ ଦୃଷ୍ଟାନ୍ତ ମିଳିବ—କଳଙ୍କିନୀ**

ପୁନୀତ ଏହିପରି ଭାବରେ ଆପେ ଆପେ ବରଣ କରି ନେଇଛି ବିଷାଦକୁ । ସାମାନ୍ୟ ଅର୍ଥ ଲୋଭରେ ପଡ଼ି ସେ ଜନ୍ମଦାତା ପିତାର ଗାଲରେ ମଧ୍ୟ ଚପୋଟା ଘାତ କରିବାକୁ କୁଣ୍ଠା ବୋଧ କରନି ।

ନିଷ୍ଠୁର ପିତାର ଦୁଇ ଚକ୍ଷୁରୁ ସେତେ ବେଳେ ବହି ପଡ଼ିଛି ଦୁଇଧାର ଲୁହ । ମୃତ୍ୟୁ ତାର ସେତେବେଳେ ନଇଁ ପଡ଼ିଛି । ତା ପରେ ହେଲା କଅଣ —

ପରବର୍ତ୍ତୀ ଆକର୍ଷଣ—

**ଲୁହର ଦାଗ—[ ଉପନ୍ୟାସ ]**

**ଆଲୋକ ରଶ୍ମି [ ପଦ୍ୟଗୁଚ୍ଛ ]**

## ପଢ଼ନ୍ତୁ ! ପଢ଼ନ୍ତୁ ! ପଢ଼ନ୍ତୁ

### ସେମାନଙ୍କର ଉପନ୍ୟାସ — ରେଣୁଧଜି

ଏହାପରେ ପ୍ରକାଶ ପାଉଛି

## ଷ୍ଟ୍ରେଂଜ ଗାର୍ଲ

ଦୁଇଟି ପ୍ରାଣର ଅପୂର୍ବ ମିଳନ ପଥରେ କିଏ ଏଇ ଅଦ୍ଭୁତ ବାଳିକା ? କିଏ ଏଇ ଅଦ୍ଭୁତ ବାଳିକା ଯେକି ମୁହୂର୍ତ୍ତ ଦେବା ଭିତରେ ମଣିଷ ଆଖି ଆଗରେ ସୃଷ୍ଟି କରି ପାରନ୍ତି ମାୟା ମରୀଚିକା .. ସହରର ଅନ୍ଧକାର ଗର୍ଭରେ ସୃଷ୍ଟି କରି ପାରନ୍ତି ପ୍ରେତପୁରୀର ଗନ୍ତା-ଘର -- ସାହସର ଶେଷ ସୀମା ଛୁଟନ୍ତି ଜୀବନ୍ତ ମଣିଷ ଆଖିରେ ଧୂଳିଦେଇ ସୃଷ୍ଟି କରି ଦେଉଛି ମାୟା ପୁରୀର ଇନ୍ଦ୍ରଜାଲ ?

କିଏ --- କିଏ ଏଇ ଅଦ୍ଭୁତ ବାଳିକା ? କିଏ ଏଇ ରହସ୍ୟ ମୟୀ ? ଏଇ ରୋମାଞ୍ଚକ ଘଟଣା ପର୍ଦ୍ଦା ଉଠେଇକି ଗଳ୍ପ ଖୋଲି କହୁ ଦେବ ଷ୍ଟ୍ରେଞ୍ଜ ଗାର୍ଲ ମୂଲ୍ୟ ୫।୯

ପୁଣି ପରେ ପରେ ପ୍ରକାଶ ପାଉଛି—

## ଫିଲ୍ମ ଷ୍ଟାର

## ଅଦୃଶ୍ୟ ମାନବ